ବ୍ୟଙ୍ଗକାରକୁ ସାଧାରଣତଃ ସେହି ଲୋକମାନେ ତିରସ୍କାରପୂର୍ଣ୍ଣ ଦୃଷ୍ଟିରେ ଦେଖିଥା'ନ୍ତି, ଯେଉଁମାନଙ୍କୁ ସେ ବ୍ୟଙ୍ଗ କରିଥାଏ । ତଥାପି ସେମାନଙ୍କୁ ଲଜ୍ଜିତ କରିବା ତା'ର ଉଦ୍ଦେଶ୍ୟ ନଥାଏ, ବରଂ ସଚେତନ କରାଇ ଥାଏ ।

–ଲୁ ଶୁନ୍ (ଚୀନ୍)

ବ୍ୟଙ୍ଗ ସ୍ୱଭାବରେ ତିକ୍ତ । ବ୍ୟଙ୍ଗକାର ତା' କଳା କୌଶଳରେ ଏଭଳି ଭାବରେ ସେଇ ତିକ୍ତତାକୁ ଗୌଣ କରିଦିଏ ଯେ ସାଧାରଣ ପାଠକ ତିକ୍ତତାର ଆଭାସ ବି ପାଆନ୍ତି ନାହିଁ। କ୍ୱଚିତ୍ କଳାକାର ଏଭଳି କରି ପାରନ୍ତି ।

– ଭଗବତୀ ଚରଣ ବର୍ମା

ବ୍ୟଙ୍ଗକାର ଜଣେ ସାମାଜିକ ଠିକାଦାର । ବେଳେ ବେଳେ ସେ ଝାଡୁଦାରଟିଏ, ଯାହାର କାମ ସମାଜର ଅଳିଆ ଆବର୍ଜନାକୁ ସଫା କରିବା ।

– ମେରେଡିଥ୍

(ଆଇଡିଆ ଅଫ୍ କମେଡି)

ଜ୍ଞାନହୋତାଙ୍କ

# ଅଜ୍ଞାନ ଜୀବର

ପ୍ରକାଶକ :
**ଜଗନ୍ନାଥ ରଥ,**
ପୁସ୍ତକ ପ୍ରକାଶକ ଓ ବିକ୍ରେତା,
ବିନୋଦ ବିହାରୀ, କଟକ-୨

ଜ୍ଞାନ ହୋତାଙ୍କ ଅଜ୍ଞାନ ବିଚାର

ଲେଖକ ଜ୍ଞାନ ହୋତା
ଚହଟା,ବିଡ଼ାନାସୀ,
କଟକ-୧୪

ପ୍ରକାଶକ ଜଗନ୍ନାଥ ରଥ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ,କଟକ-୨

ଅକ୍ଷର ସଜ୍ଜା : ବଳରାମ ମହାପାତ୍ର

ମୁଦ୍ରଣ ପଞ୍ଚସଖା ପ୍ରକାଶନ
ସୂତାହାଟ,କଟକ

ପ୍ରଥମ ମୁଦ୍ରଣ : ଡିସେମ୍ବର, ୨୦୧୦

ପ୍ରଚ୍ଛଦ ସନ୍ଦୀପ୍ ମହାନ୍ତି

ମୂଲ୍ୟ ଟ.୭୦/- (ସତୁରୀ ଟଙ୍କା)ମାତ୍ର

**Gyana Hotanka Agyana Bichara**

Writter **Gyana Hota**
Chahata, Bidanasi ,
Cuttack-14

Publisher **M/s Jagannath Ratha**
Publisher & Book-seller
Binod Bihari , Cuttack-2

Type Set **Balaram Mohapatra**

Printed at **Panchasakha Prakashan**
Sutahat,Cuttack.

First Edition : **December - 2010**

Cover design: **Sandip Mohanty**

Price **Rs.70/- only.**



ଓଡ଼ିଶାର ବହୁ ବ୍ୟଙ୍ଗକାରଙ୍କ

ଆଦର୍ଶ, ମାର୍ଗଦର୍ଶକ ତଥା

ପ୍ରେରଣାର ଉତ୍ସ

ଶ୍ରୀ ରାଧୁମିଶ୍ରଙ୍କୁ

# ମୁଖବନ୍ଧ ନା ମୁଖ ବନ୍ଦ

ଯାଙ୍କ ବହିର ମୁଖବନ୍ଧ ଲେଖିବା ପାଇଁ ପ୍ରଥମେ ମୋ ଯୋଗ୍ୟତାର ସମୀକ୍ଷା ହେବା ଦରକାର । ମତେ ଲେଖିବାକୁ କହିବା ପୂର୍ବରୁ ଇଏ ତ ସମୀକ୍ଷା କରିଥିବେ ନିଶ୍ଚୟ । ଯଦି ମୁଁ ନିଜେ ସମୀକ୍ଷା କରେ ମୋ ସପକ୍ଷରେ ଯେ, କିଛି ଯୁକ୍ତି ମୁଁ ଦେଇ ପାରିବିନି ସେକଥା ନୁହଁ ।

ମୁଖବନ୍ଧ ଲେଖିବା ଲୋକ ନିହାତି ଜଣେ ନାମୀ ସାହିତ୍ୟିକ ହେଇଥିବା ଦରକାର ବୋଲି ଯଦି କେହି ଭାବୁଥାଏ ତେବେ ମୁଁ ତଥାକଥିତ ସାହିତ୍ୟିକ, ଏମିତିକି ସାହିତ୍ୟ ଏକାଡେମୀ ଉଦ୍ଦେଶ୍ୟରେ ପ୍ରଶ୍ନ ରଖିବି ଯେ ସେମାନେ ବ୍ୟଙ୍ଗକୁ ସାହିତ୍ୟରେ ଗଣୁଛନ୍ତିତ ? ଯଦି ବ୍ୟଙ୍ଗ ସାହିତ୍ୟ କେବଳ ତା'ର ପାଠକ ପାଠିକାଙ୍କୁ ନେଇ ନିଜର ପ୍ରାଧାନ୍ୟ ବିସ୍ତାର କରିଛି ଏବଂ ଜ୍ଞାନ ହୋତା ନାମକ କେହି ବ୍ୟଙ୍ଗକାର ସେହି ବ୍ୟଙ୍ଗରସକୁ ପରସିଛନ୍ତି, ତେବେ ସେ ରସକୁ ଚାଖିଥିବା ଶ୍ରେଷ୍ଠ ପାଠକ ପାଠିକା ମାନଙ୍କ ଭିତରେ ମୋ ନାଁ ପ୍ରଥମରେ ଥିବ ବୋଲି ମୁଁ ଦାବି ରଖିପାରେ । ଦ୍ୱିତୀୟତଃ ହୋମିଓପାଥି ଡାକ୍ତରଙ୍କପାଖେ ପୁଡ଼ିଆ ବାନ୍ଧୁ ବାନ୍ଧୁ ବହୁଲୋକ ଯେ ନିଜେ ଡାକ୍ତର ବନି ଖୁବ୍ ନାଁ କମେଇଚନ୍ତି ତା'ର ଅସଂଖ୍ୟ ଉଦାହରଣ ମୋ ପାଖରେ ଅଛି । ସୁତରାଂ ଜ୍ଞାନ ହୋତାଙ୍କ ଧର୍ମପତ୍ନୀ ହିସାବରେ ଦୀର୍ଘ ଦୁଇ ଦଶନ୍ଧିରୁ ଅଧିକ କାଳ ତଥାକଥିତ ସାହିତ୍ୟିକ ଏବଂ ବ୍ୟଙ୍ଗକାର ମାନଙ୍କୁ ଚାହା ଦେଉ ଦେଉ ମୋ ଉପରେ ଯେ ସାହିତ୍ୟ ଛିଟା ପଡ଼ିନ୍‌ଥିବ ସେକଥା କହିବାପାଇଁ କାହା ଜିଭରେ ହାଡ଼ ଅଛି ? ଏ ପରିପ୍ରେକ୍ଷୀରେ ମୁଁ ନିଜକୁ ସାହିତ୍ୟିକା ଘୋଷଣା କରିବାର ଯଥେଷ୍ଟ ସମ୍ଭାବନା ରହିଛି ।

ଏବେ ଅଧିକାର କଥା କହିବି । ଯାଙ୍କୁ ମୁଁ ହାଡ଼େ ହାଡ଼େ ଜାଣେ ଯେ ରାତି ଖାଇସାରିବା ପରେ ଯଦି କଲମ ଧଇଲେ ତେବେ ପାହାନ୍ତା ହବା ବା ସକାଳ ପାଇବା ନିଶ୍ଚିତ । ପାଣି ବୋତଲ ଥୋଇ ମୁଁ ଶୋଇବାକୁ ଯାଏ ସତ ହେଲେ ଇଏ ଶୋଇବାକୁ ଦେଲେ ତ ! ପ୍ରତି ଦି'ଚାରି ଧାଡ଼ି ଲେଖା ହବାପରେ, ରାତିଅଧରେ ମୋ ଛଡ଼ା ଆଉ କିଏ ଶ୍ରୋତା ଥିଲେ ତ ଶୁଣିବ ! ପ୍ରତି 'ଅଜ୍ଞାନ ବିଚାର' ଲେଖା

ହବାର ପୂର୍ବରାତି ମୁଁ ବିନାକାରଣରେ ଅନିଦ୍ରା ରହିଛି ଯେତେବେଳେ, ଅଜ୍ଞାନ ବିଚାର ସଂକଳନର ମୁଖବନ୍ଧ ଲେଖିବାର ପ୍ରଥମ ଅଧିକାର ତ ମୋର । ତା' ଛଡ଼ା ପ୍ରତି ରବିବାର ସମାଜରେ ଅଜ୍ଞାନ ବିଚାର ବାହାରି ସାରିବା ପରେ ଲେଖା ସବୁକୁ ସାଇତି ରଖିଥିଲି ବୋଲିତ ଏ ସଂକଳନ ସମ୍ଭବ ।

ଅଧିକାର କହିବା ପ୍ରସଙ୍ଗରେ ମୋ ମନର କଥାଟେ ଖୋଲି କହିଦେବି ବୋଲି ଭାବୁଛି । ମୋ ଜାଣିବାରେ ନିଜକୁ ପ୍ରତିଷ୍ଠିତ ବା ଆଗଧାଡ଼ିର ବୋଲି ଦାବି କରୁଥିବା କେହି କେହି ସାହିତ୍ୟିକ ବନ୍ଧୁ ପି ଏଫ୍‌ରୁ ଟଙ୍କା ଆଣି ବହି ଛାପିଲେ ସ୍ତ୍ରୀକୁ ପ୍ରକାଶିକା କରିଚନ୍ତି, ପତ୍ରିକାଟିଏ ଛାପିଲେ ସ୍ତ୍ରୀଙ୍କୁ ସମ୍ପାଦିକା ବନେଇଚନ୍ତି, ସେଇ ହିସାବରେ ଦେଖିଲେ - ଇଏ ମୋ ପାଇଁ କରିଚନ୍ତି କ'ଣ ? ଯଦି ପ୍ରଥମ କରି ମୁଖବନ୍ଧଟେ ଲେଖିବାକୁ କହୁଚନ୍ତି, ଏ ସୁଯୋଗକୁ ହାତଛଡ଼ା କରିବି କାହିଁକି ?

ଖୋଲାଖୋଲି ଏତେ କଥା କହିଲିଣି ଯେତେବେଳେ ଆଉ ଗୋଟିଏ ମନର କଥା ବାକି ରଖିବି କିଆଁ ? ଗତ ସଂକଳନ 'କଥା ଚାଳିଶା'ର ମୁଖବନ୍ଧ ରାଧୁ ମିଶ୍ର ଲେଖିଥିଲେ ବୋଲି ଏ ସଂକଳନ 'ଅଜ୍ଞାନ ବିଚାର' ତାଙ୍କୁ ଉତ୍ସର୍ଗ ହବା କଥା ଶୁଣିବା ପରେ ମୁଁ ବେଶ ଅନୁମାନ କରିପାରୁଚି ଯେ ମୋର ବି ଭବିଷ୍ୟତ ଅଛି । ଯାହା ହେଲେ ବି ମଣିଷ ତ ! ଜଳ ଜଳ ଦିଶୁଥିବା ଭବିଷ୍ୟତଟାକୁ ଗୋଡ଼ରେ ଆଡ଼େଇ ଦେବି କୋଉ ହିସାବରେ ?

ଲୋଭ ଛାଡ଼ି ନ ପାରି ଲେଖା ସିନା ଆରମ୍ଭ କରିଦେଲି, ହେଲେ ମୁଖବନ୍ଧ କାହିଁ ? ମତେ ଯେ ତାଗିଦ୍ କରି କହିଚନ୍ତି 'ମୋ ଲେଖାକୁ ନେଇ ତମେ କିଛି, ଲେଖିବନି ।' ତା' ମାନେ ମୋ ମୁଖ ବନ୍ଦ । ଅବଶ୍ୟ ମୁଁ ବି ମାନି ନେଇଚି, ମୂଳରୁ କହି ଦେଇଚି - ତଥାକଥିତ ସାହିତ୍ୟିକଙ୍କ ସମୀକ୍ଷା ବା ସାହିତ୍ୟ ଏକାଡେମୀର ଦୟାରୁ ବ୍ୟଙ୍ଗ ସାହିତ୍ୟ ବଞ୍ଚିନାହିଁ । ବଞ୍ଚିଚି ତ ପାଠକ ପାଠିକାଙ୍କ ଶ୍ରଦ୍ଧାରୁ ବଞ୍ଚିଚି । ଆଉ ଜ୍ଞାନ ହୋତା ନାମକ ବ୍ୟଙ୍ଗ ସାହିତ୍ୟିକ ରବିବାର ସମାଜର 'ମତାମତ' ପୃଷ୍ଠାରେ ଲେଖାକୁ ନେଇ ସେମିତି ଶ୍ରଦ୍ଧା ବହୁତ ପାଇଚନ୍ତି । ଏଣୁ ମୁଁ ମୋ ମୁଖ ବନ୍ଦ କରୁଚି ।

**ସୌଦାମିନୀ ହୋତା**

# କ'ଣ କୋଉଠି

## କ'ଣ    କୋଉଠି

# ଘଟ ପରିବର୍ତ୍ତନ

ଭୁବନେଶ୍ୱରରୁ ସୁଟିଂ ସାରି ପୁରୀ ଯିବି । ବଦ୍ରି ମିଶ୍ରଙ୍କ ଝିଅ ବାହାଘର । ମତେ ଏକା ଡାକିଚନ୍ତି, ପରିବାର ସାଙ୍ଗରେ ନେଉ ନାହିଁ । ଭାବିଲି-ଏଇଠୁ ଜ୍ଞାନୀ ଦେବାଶିଷ ଆଉ ପ୍ରିୟକୁ ସାଙ୍ଗରେ ନେଇ ଯିବି, ପଥକ୍ଲାନ୍ତି ଦୂର ହେଇଯିବ । ପୁରୀ ଯିବା ପାଇଁ କିଏ ବା ମନାକରେ । ଦିହେଁ ବାହାରି ପଡ଼ିଲେ ।

କାର୍‌ର ଡାହାଣ ଝରକା ଖୋଲି ବସିପଡ଼ିଲା ଦେବାଶିଷ, ବାଁ କଡ଼ ଖୋଲି ପ୍ରିୟ । କାନରେ ଗୋଟେ ଗୋଟେ ମୋବାଇଲ ଧରି ଗପ ଆରମ୍ଭ କରିଦେଲେ । ଭୁବନେଶ୍ୱରରୁ ପୁରୀ ଆଉ ପୁରୀରୁ ଭୁବନେଶ୍ୱର ଗପିଗପି ଗଲେ, ଗପିଗପି ଫେରିଲେ । ପଥକ୍ଲାନ୍ତି ଦୂର କରିବା ପାଇଁ ସାଙ୍ଗରେ ଡାକିଥିଲି, କ୍ଲାନ୍ତି ଦୂରକରିବା ତ ଦୂରର କଥା ବରଂ ଦ୍ୱିଗୁଣିତ ହୋଇଗଲା ।

ପୁରୀ ଯାତ୍ରା ତ ଯାହା ହେବାର ହେଲା, ଭୁବନେଶ୍ୱର ଷ୍ଟେସନରୁ ଝିଆରୀକୁ ରିସିଭ୍ କରି କଟକ ଫେରିବି । ତା' ସାଙ୍ଗରେ ଗପିଗପି ଅନ୍ତତଃ କଟକ ଯାଏଁ ସମୟଟା ଜଣାପଡ଼ିବନି; କିନ୍ତୁ ଟ୍ରେନ୍‌ରୁ ଝିଆରି ବି ଓହ୍ଲାଇଲା ତ କାନରେ ମୋବାଇଲ ଧରିକି ଓହ୍ଲେଇଲା । ତା'ର କୋଉ ସାଙ୍ଗ ସାଙ୍ଗରେ ହାଏ ବାଏ ଭିତରେ ମୋ ପାଦକୁ ଛୁଇଁଲା ।  ଗପିଗପି ଆସି କାର୍‌ରେ ଲଗେଜ୍ ଥୋଇଲା । ଗପିଗପି ଗାଡ଼ିରେ ବସିଲା, ଗପିଗପି ଆସି କଟକରେ ପହଞ୍ଚିଲା ।

ଆଜ୍ଞା ! ମୋବାଇଲଧାରୀ ଏମିତିଆ ପିଲାଙ୍କ ଢଙ୍ଗଢାଙ୍ଗ ଦେଖି ମୁଁ ଭାବୁଚି-ସେଇ ବାପାମାଆମାନେ ଧନ୍ୟ, ଯୋଉମାନେ ପିଲାମାନଙ୍କୁ ମୋବାଇଲ ଦେଇନାହାନ୍ତି । ମୁଁ ମୋ ପୁଅକୁ ମୋବାଇଲ ଦେଲା ପରଠୁ ତା' ସାଙ୍ଗରେ ଟିକେ

ଗପିବାର ସୁଯୋଗ ପାଏନି । ଟ୍ୟୁସନ୍ ଆଉ ପାଠପଢ଼ା ଛାଡ଼ିଦେଲେ ବାକି ସମୟ ତା'ର ମୋବାଇଲରେ କଟେ । ଏଇ ଦୃଷ୍ଟିରୁ ପିଲାଙ୍କୁ ମୋବାଇଲ ପାଇଁ ଆକଟ କରିପାରିଥିବା ବାପାମାଆଙ୍କ ପ୍ରତି ମୋର ଈର୍ଷା ବଢ଼ିଥିଲା । ଏବେ କିନ୍ତୁ ଗୋଟେ ଟେଲିଫୋନ୍ ବୁଥ୍‌ରେ କିଛି ସମୟ କାଟିବା ପରେ ଏଇ ବାପାମାଆଙ୍କ ପ୍ରତି ମୋର ଦୟାଭାବ ଆସିଯାଇଚି ।

ଟେଲିଫୋନ୍ ବୁଥ୍‌ର ସାଙ୍ଗଟା କିଛି ସମୟ ବୁଥ୍‌ରେ ବସିବା ପାଇଁ କହିଦେଇ କୁଆଡ଼େ ଚାଲିଗଲା । ଏଇ ସମୟ ଭିତରେ କୋଉ ଟ୍ୟୁଟୋରିଆଲ ନାଁ ଥିବା ବ୍ୟାଗ୍‌ଟାଏ ଧରି ଝିଅଟାଏ ଆସି ପହଞ୍ଚିଲା । ମୋ ଆଗରେ ଥିବା ଫୋନ୍ ଉଠାଇ ଗପିବା ଆରମ୍ଭ କଲା । କୋଡ଼ିଏ ମିନିଟ୍‌ର ଗପ ଭିତରୁ ବୁଝିହେଲା ଯେ ସେ ଯା' ସାଙ୍ଗେ ଗପୁଚି ସେ ତା'ର ଭାଇ ନୁହଁ, କୋଉ ଝିଅ ନୁହଁ, ବାପା କି ବୋଉ ନୁହଁ । ଧୀରେ ଧୀରେ ତା' କଥା ଶୁଣିବା ମୋ ପାଇଁ କଟୁ ହେଲା । କହିଲି - ମା'ଲୋ, କ୍ୟାବିନ୍ ଭିତରେ ଯାଇ କଥା ହ' । ଝିଅଟା ନିର୍ବିକାର ଭାବରେ କହିଲା - ନାଇଁ ଅଙ୍କଲ, ମୋର କିଛି ପ୍ରୋବ୍ଲେମ୍ ନାହିଁ, ମୋର କିନ୍ତୁ ପ୍ରୋବ୍ଲେମ୍ ହେଇଗଲା । ମୁଁ ବାହାରକୁ ଆସି ଠିଆହେଲି ।

ଇତି ମଧ୍ୟରେ ସେଇ ଟେଲିଫୋନ ବୁଥ୍‌ର ସାଙ୍ଗ ଫେରି ଆସି ମତେ ବାହାରେ ଠିଆ ହେଇଥିବା ଦେଖି କାରଣ ପଚାରିଲା । ମୁଁ ଘଟଣା କହିବା ପରେ ହସିଦେଇ କହିଲା ଇଏ ଆମ ନିତିଦିନିଆ ଘଟଣା । ଜ୍ଞାନଭାଇ । ଆପଣ ଆଶ୍ଚର୍ଯ୍ୟ ହେବେ ଏଠିକି ପିଲା ଯେମିତି ଭାବେ ଆସି ମୋବାଇଲ ରିଚାର୍ଜ କରୁଚନ୍ତି । ଆଜି ଗୋଟେ ଝିଅ ମୋବାଇଲର ସିମ୍‌କାର୍ଡଟେ ଧରି ଆସିଚି ୧୦୦ ଟଙ୍କା ରିଚାର୍ଜ କରିବାକୁ । ମୁଁ ପଚାରିଲି ତୋର ମୋବାଇଲ କାହିଁ ? ଝିଅଟା କହିଲା - ଘରେ ବାପାମାଆ ମୋବାଇଲ ପାଇଁ ଆକଟ କରିଚନ୍ତି, ମୁଁ ଏଇ ସିମ୍ ନେଇ ପିଙ୍କିର କି ଅଙ୍କିତାର ମୋବାଇଲରେ ପୂରେଇ କଲେଜରେ ଯାହା ସାଙ୍ଗରେ କଥା ହେବା କଥା ହେବି ।

ମୁଁ କହିଲି- ବାଃ, ବାପାମାଆ ତେଣେ ନିଶ୍ଚିନ୍ତ ଯେ ଝିଅ ମୋର ମୋବାଇଲ ବ୍ୟବହାର କରୁନି । ଏଇ କଥାଟି ଶୁଣିବା ପରେ ବହୁ ଦିନ ଆଗରୁ ମୋବାଇଲରେ

ପାଇଥିବା ମେସେଜ୍‌ଟିଏ ମନେପଡ଼ିଲା - 'ମୋବାଇଲଟା ଗୋଟେ ଶରୀର, ସିମ୍ ତା'ର ଆତ୍ମା । ରେ ମୂଢ଼ ମନୁଷ୍ୟ ! ବାଲାନ୍ସର ଚିନ୍ତା ଛାଡ଼ି ଯେତେ ପାରୁଚ ଏସ୍‌ଏମ୍‌ଏସ୍ କର ।' ସେତେବେଳେ ଏଇ ସିମ୍‌ଟା କିପରି ଆତ୍ମା ହେଲା ବୁଝିପାରିନଥିଲି ।

ଆଜି ବୁଝୁଚି, ସିମ୍ ଆଉ ଆତ୍ମା ଭିତରେ ଫରକ ନାହିଁ । ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି, ନୈନଂ ଦହତି ପାବକଃ । ଆତ୍ମାକୁ କେହି ଦେଖିପାରନ୍ତି ନାହିଁ, କେହି ଚିହ୍ନି ପାରନ୍ତି ନାହିଁ, କେହି ଛୁଇଁ ପାରନ୍ତି ନାହିଁ । ବାପାମାଆ ବନ୍ଧୁବାନ୍ଧବ କେବଳ ଶରୀରରୂପୀ ମୋବାଇଲକୁ ଜଗିଥାନ୍ତି, ସିମ୍‌ରୂପୀ ଆତ୍ମା ତା' ବାଟରେ ଲୀଳାଖେଳା କରୁଥାଏ । ଏଇ ସିମ୍ ରୂପୀ ଆତ୍ମାଟି ଘଟ ପରିବର୍ତ୍ତନ କରେ- ଆଜି ପିଙ୍କି ଶରୀରରେ ତ କାଲି ଅଙ୍କିତା ଶରୀରରେ !



# ପୁଲିସ ପକେଟ୍

'ଆନ ବୋଲେ ମୁହିଁ ଅଟଇ ପୁଲିସ
ବିନାମେଘେ ସୃଜି ପାରଇ କୁଳିଷ
+ + + +
କିବା ଦୋଷୀ ଅବା ଦୋଷହୀନ ନର
ମୋ ପ୍ରତାପେ ରାଜ୍ୟେ ସର୍ବେ ଥରହର' ।

କବିବର ରାଧାନାଥ ରାୟଙ୍କଠାରୁ ଆରମ୍ଭ କରି ଏଯାବତ୍ ବହୁ କବି, ଲେଖକ, ବ୍ୟଙ୍ଗକାର ପୁଲିସଙ୍କୁ ବ୍ୟଙ୍ଗ ବିଦ୍ରୁପ କରି ଆସିଛନ୍ତି । ଖୁବ୍ କମ୍ ନାଟକ କିମ୍ବା ଚଳଚ୍ଚିତ୍ର ଦେଖିବାକୁ ମିଳେ ଯେଉଁଥିରେ ପୁଲିସଙ୍କୁ ଏକ ହାସ୍ୟୋଦ୍ଦୀପକ ଚରିତ୍ର ଭାବେ ଉପସ୍ଥାପନା କରାଯାଇନଥାଏ ।

ଅବଶ୍ୟ ମୋ ପିଲାବେଳେ ମୁଁ ଏଭଳି କବିତା, ନାଟକ ବା ଚଳଚ୍ଚିତ୍ର ଦେଖିନାହିଁ । ଆମ ଗାଁରେ ଫାଣ୍ଡି ନଥିବାରୁ ପୁଲିସଙ୍କ ଚେହେରା ବି ପ୍ରାୟ ଦେଖିନାହିଁ । କେବଳ ଘରକୁ ଇଲିଶି ମାଛ ଆସିଲେ ମୁଁ ପୁଲିସି ନାଁ ଶୁଣେ । ମୋ ଭାଇ ଡେଇଁ ଡେଇଁ କହେ- 'ମାଛ ଖାଇବ ଇଲିଶି, ଚାକିରି କରିବ ପୁଲିସି' । ସେତେବେଳଠୁଁ ମୋର ପୁଲିସ ଚାକିରି ପ୍ରତି ଭାରି ଦୁର୍ବଳତା ଦେଖାଦେଇଥିଲା । ପୁଲିସ ପୋଷାକଟାଏ ପିନ୍ଧିବା ପାଇଁ ଭାରି ଇଚ୍ଛା ହେଉଥିଲା । ବଡ଼ ହେଲି । 'ବର୍ଦ୍ଦି' ସିନେମା ଦେଖିଲି । ପୁଲିସ ପୋଷାକ ପ୍ରତି ଆଗରୁ ତ ଶ୍ରଦ୍ଧା ଥିଲା, ଏଥର ସମ୍ମାନ ବି ବଢ଼ିଗଲା । ସାଙ୍ଗସାଥୀଙ୍କୁ କଥା ଛଳରେ କହିଲି- 'ଭାଇ ! ସବୁ ପୁଲିସଙ୍କୁ ଗୋଟିଏ ତରାଜୁରେ

ତଉଲିବା ଉଚିତ ନୁହେଁ । ଏବେ ବି ସଚ୍ଚୋଟ ପୁଲିସବାଲା ଅଛନ୍ତି । ପୁଲିସବାଲାଙ୍କୁ ନହେଲା ନାହିଁ, ଏମାନଙ୍କ ବର୍ଦ୍ଦି ବା ୟୁନିଫର୍ମକୁ ସମସ୍ତେ ସମ୍ମାନ ଜଣାଇବା ଉଚିତ ।' ମୋ କଥାକୁ ଜଣେ ବନ୍ଧୁ ସମର୍ଥନ ଜଣାଇ କହିଲେ, 'ମୋର ବି ପୁଲିସ ପୋଷାକ ପ୍ରତି ବହୁତ ସମ୍ମାନ ଅଛି, ହେଲେ ତାଙ୍କ ୟୁନିଫର୍ମରେ ସାମାନ୍ୟ ପରିବର୍ତ୍ତନ କରାଗଲେ ପୁଲିସବାଲାଙ୍କ ପ୍ରତି ସମସ୍ତଙ୍କ ସମ୍ମାନ ଆହୁରି ବଢ଼ିଯା'ନ୍ତା ।'

ମୁଁ ବଡ଼ ଆଗ୍ରହର ସହ ପଚାରିଲି, 'ପୁଲିସ ପୋଷାକରେ ଆପଣ କ'ଣ ପରିବର୍ତ୍ତନ ଚାହୁଁଛନ୍ତି ? ତାଙ୍କ ପୋଷାକର ରଙ୍ଗ, କାନ୍ଧର ଲେଖା, ମୁଣ୍ଡର ଟୋପି, ହାତର ବାଡ଼ି ନା ଆଉ କ'ଣ ? ବନ୍ଧୁ କହିଲେ - 'ନାଇଁ ନାଇଁ । ସେଥିରେ କିଛି ପରିବର୍ତ୍ତନ ଦର୍କାର ନାଇଁ । ସେଇ ଖାକି ପୋଷାକ ଥାଉ, କାନ୍ଧର ପିତ୍ତଳ ଲେଖା ଥାଉ, ମୁଣ୍ଡରେ ଟୋପି ଥାଉ, ହାତର ବାଡ଼ି ଥାଉ; କେବଳ ପୁଲିସ ପୋଷାକରୁ ପକେଟ ଗୁଡ଼ାକ କାଢ଼ି ନିଆଯାଉ' ।

ପ୍ରକୃତରେ ପକେଟ୍‌ଟା ଅଡୁଆ କରୁଛି, ନହେଲେ ଆମ ଦେଶର ପୁଲିସ୍ ସବୁଥିରେ ଆଗୁଆ । ଆମେରିକାର ପୁଲିସ ବାହାଦୂରୀ ମାରି କହନ୍ତି - ଅପରାଧଟାଏ ଘଟିଲେ, ଚବିଶ ଘଣ୍ଟା ମଧ୍ୟରେ ଆମେ ଅପରାଧୀକୁ ଧରିଦେଇ ପାରୁ । ଜାପାନ ପୁଲିସ କହନ୍ତି - ଆମେ ଚବିଶ ମିନିଟ୍‌ରେ ଅପରାଧୀକୁ ଧରିଦେଉ । ଏହି ବାହାଦୁରିଆ ପୁଲିସମାନେ ଆମ ଦେଶର ପୁଲିସ୍‌କୁ ଜାଣିନାହାନ୍ତି । ଏମାନେ ତ ଅପରାଧୀକୁ ପରେ ଜାଣନ୍ତି, ଆମ ପୁଲିସ ଅପରାଧ ଘଟିବାର ବହୁ ଆଗରୁ ଅପରାଧୀକୁ ଜାଣିଥାନ୍ତି । ଖାଲି ପକେଟ୍‌ଟା ଅଡୁଆହେଇ ଛନ୍ଦି ପକାଏ ବୋଲି ଅପରାଧୀକୁ ଧରିପାରନ୍ତି ନାହିଁ ।

ଯେଉଁଠି ଅପରାଧୀ ନାହାନ୍ତି ସେଠି ପୁଲିସ ନାହାନ୍ତି । ପୁଲିସ ପହଞ୍ଚିଗଲେ ଅପରାଧୀ ତିଆରି ହେଇ ଯାଆନ୍ତି । ଖାସ୍ ଏଇ ପକେଟ ପାଇଁ । ଏଇ ପ୍ରସଙ୍ଗରେ ଆମ ଗାଁକୁ ଫେରିଯିବା ।

ଆମ ଗାଁରେ ଡାକ୍ତରଖାନା ନଥିଲା । ଲୋକେ ଆନ୍ଦୋଳନ କଲେ, କଲେକ୍ଟର ଅଫିସ୍ ଘେରାଉକଲେ, ଗାଁରେ ଡାକ୍ତରଖାନା ଖୋଲାଗଲା । ସ୍କୁଲ୍ ନଥିଲା ।

ସେମିତି ଆନ୍ଦୋଳନ ହେଲା, ସ୍କୁଲ ଖୋଲିଲା । ଏବେ ଗାଁରେ କଲେଜ ଖୋଲିଗଲାଣି; କିନ୍ତୁ ଏ ଯାଏଁ ଆମ ଗାଁରେ ଫାଣ୍ଡି ଖୋଲା ହେଇନି । ଏଥିପାଇଁ କେହି କେବେ ଆନ୍ଦୋଳନ କରିନି । ମୁଁ ଗାଁକୁ ଯାଇ ମତାମତ ଦେଇଥିଲି - ଗାଁରେ କଲେଜ ଖୋଲିଲାଣି, ଲୋକେ କୁକୁଡ଼ା ପାଳୁଛନ୍ତି, ଛେଳି ଚାଷ କରୁଛନ୍ତି । ଗାଁରେ ଏଥର ଫାଣ୍ଡିଟାଏ ଖୋଲା ହେଉ । ଅନୁଭବୀ ବୟସ୍କ ଲୋକଜଣେ କହିଲେ - 'ବାବୁରେ ! ଆମ ଗାଁରେ ଯଦି ଫାଣ୍ଡି ଖୋଲାହୁଏ ଆମେ କଲେକ୍ଟର ଅଫିସ ଘେରଉକରିବୁ - କାରଣ ଆମକୁ ଆମ ଧନଜୀବନର ସୁରକ୍ଷା ଦର୍କାର ।



# ନିମନ୍ତ୍ରଣ ଚାନ୍ଦା

**ଭୋ**ଜି ମହୋତ୍ସବରେ ଆଉ ପଙ୍ଗତ ପଡୁନାହିଁ । ଲୋକଙ୍କୁ ଡାକି ପିଣ୍ଡାରେ ଖୁଆଇ ପୁଣ୍ୟ ଅର୍ଜନ ପରମ୍ପରାଟା ଏବେ ଅତ୍ୟାଧୁନିକା ଗୃହିଣୀଙ୍କ ପାଇଁ ଗୋଟାଏ ଅପରଛନିଆ କାମ ହୋଇ ଗଲାଣି । ତେଣୁ ସୁଟ୍‌ବୁଟ୍ ପିନ୍ଧା ବାବୁଙ୍କୁ ବି ଧାଡ଼ିରେ ପ୍ଲେଟ୍ ଧରି ଠିଆ ହେବାକୁ ପଡୁଛି, ହଜାର ଟଙ୍କିଆ ନିମନ୍ତ୍ରଣ ପାଇ ମଧ୍ୟ । ଏହାକୁ କୁହାଯାଉଛି 'ବୁଫେ' । ଖାଇବା ପାଇଁ ସମସ୍ତେ ବିକଳ ହୋଇ ହାତ ପତାଇବା ହିଁ ଏହି ପରମ୍ପରାର ମହାର୍ଘ୍ୟ ସେବା ।

ଏଇ କିଛିଦିନ ତଳେ ମୁଁ ମୋ ପୁଅର ବ୍ରତଘର କରୁଥିଲି । ଏଇ 'ବୁଫେ' ନିଶାଟା ମୋତେ ମଧ୍ୟ କବଳିତ କରିସାରିଥିବାରୁ ପଙ୍ଗତ ଆଡ଼କୁ ଜମା କଥା ବି ନେଲିନି । ମୋ ଗାଁରୁ ଯଦୁ ମଉସା ଆସିଥିଲେ । ସାଙ୍ଗରେ ମାଉସୀ । କଟକ ରାସ୍ତା ଯାହା ପଚାରି ପଚାରି, ଦମେ ଏପଟ ସେପଟ ବୁଲି ଶେଷରେ ମୋ ଅଧିକାରରେ କେଇ ଘଣ୍ଟା ପାଇଁ ଥିବା କଲ୍ୟାଣମଣ୍ଡପରେ ପହଞ୍ଚିଲେ । ମଣ୍ଡପ ସାମ୍ନା ଗେଟ୍ ପାଖରେ ଦୁଇଜଣ ଠିଆ ହୋଇ ସମସ୍ତଙ୍କୁ ନମସ୍କାର ପକାଇ ପାଛୋଟି ନେଉଥାନ୍ତି । ଯଦୁ ମଉସା ଓ ମାଉସୀଙ୍କୁ ବି ସେ ଦୁହେଁ ନମସ୍କାର ପକାଇଲେ । ଯଦୁ ମଉସା ସେମାନଙ୍କୁ ଚିହ୍ନିବାକୁ ଚେଷ୍ଟା କରି ମଧ୍ୟ ପାରିଲେ ନାହିଁ । ପାଖକୁ ଯାଇ ପଚାରିଲେ, 'ଆରେ ବାପା ତୁମ୍ଭେମାନେ କିଏ, ଚିହ୍ନିପାରୁନି ! ତୁମେ କ'ଣ ଆମ ଜ୍ଞାନର ବନ୍ଧୁବାନ୍ଧବ । ସେମାନେ ଉତ୍ତର ଦେଲେ, 'ନାହିଁ ଆଜ୍ଞା ।' ମଉସା କହିଲେ, 'ତୁମେ ତା'ହେଲେ ଆମ ବୋହୁଘର ଲୋକ । ସେମାନେ ଏଥର ବି କହିଲେ, 'ନାହିଁ ଆଜ୍ଞା, ଆମେ ଭଡ଼ାରେ ଆସିଛୁ ।'

ମଉସା ବଡ଼ ସନ୍ତର୍ପଣରେ ମଣ୍ଡପ ଭିତରକୁ ପଶିଲେ । ଏତେ ବାଟରୁ ଆସିଥିବାରୁ ଥକା ହୋଇପଡ଼ିଥାନ୍ତି । ମାଉସୀଙ୍କୁ ଧରି ଟିକେ କେଉଁଠି ବସିବା ପାଇଁ ଜାଗା ଖୋଜୁଥିଲେ ମଧ୍ୟ ପାଇଲେ ନାହିଁ । ଜାଗା ଥିଲେ ସିନା ବସିବେ । ଦେଖିଲେ ସମସ୍ତେ ପ୍ଲେଟ ଓ ଚାମଚ ଧରି ଖାଦ୍ୟ ବଢ଼ା ହେଉଥିବା ଜାଗାରୁ ଲାଇନ୍ ଲମ୍ବାଇ ଦେଇଛନ୍ତି । ମଉସା କହିଲେ, 'ମୁଁ ଏଠି ଖାଇ ପାରିବି ନାହିଁ' । ମାଉସୀଙ୍କ ଭୋକ ଅସମ୍ଭାଳ ପରିସ୍ଥିତିରେ ପହଞ୍ଚିଲାଣି । ପୁଣି ଭୋଜିକୁ ଆସି ନଖାଇ ଯିବେ କେମିତି । ମାଉସୀ ଯଦୁମଉସାଙ୍କୁ ବାଧ୍ୟ କରି ନିଜେ ଆଣି ପ୍ଲେଟ୍‌ଟାଏ ତାଙ୍କ ହାତକୁ ଧରାଇଦେଲେ ଓ ନିଜେ ଗୋଟାଏ ଧରିଲେ । ସେଠୁ ମଉସା-ମାଉସୀ ଉଠିଲେ ଲାଇନ୍ ଚାଲିଥିବା ଦିଗକୁ । ସେମାନଙ୍କ ପାଳି ପଡ଼ିବା ବେଳକୁ ୧୦ ମିନିଟ୍ । ମାଉସୀ ପ୍ଲେଟଟା ବଢ଼ାଇ ଦେଇଛନ୍ତି, ଆଉ ଜଣେ ଅଧା ଖିଆ ଲୋକ ତା' ପ୍ଲେଟ୍ ମାଉସୀଙ୍କ ଉପର ଦେଇ ଦେଖାଉ ଦେଖାଉ ଅଇଁଠା ଡାଲି ସବୁ ଅଜାଡ଼ି ହୋଇପଡ଼ିଲା ମାଉସୀଙ୍କ ପ୍ଲେଟ୍ ଉପରେ । ମାଉସୀ ଆଉ ଖାଇବେ କ'ଣ ପ୍ଲେଟ୍ ଧରି ବାହାରି ଆସିଲେ । ମଉସା ଯେତେ ବୁଝାଇଲେ ମଧ୍ୟ ମାଉସୀ ଆଉ ଖାଇବାକୁ ରାଜି ହେଲେନାହିଁ । ମଉସା ଓ ମାଉସୀ ଉପାସରେ ଫେରିଆସିଲେ ।

ପରଦିନ ସକାଳୁ ସପରିବାରେ ଆମେ ବସିଗଲୁ ଡ୍ରଇଁ ରୁମ୍‌ରେ । (ଆଜିକାଲି ପରିବାର କହିଲେ ତ ସ୍ୱାମୀ ସ୍ତ୍ରୀ ଆଉ ବଚ୍ଚା) । ମଉସା-ମାଉସୀଙ୍କୁ ମୋ ସ୍ତ୍ରୀ ପଚାରିଲେ, ଚାହା କରି ଆଣିବି ?' ମଉସା କହିଲେ 'ନାଇଁରେ ମା' କାଲି ଟିକେ ଅଧିକ ଖାଇଦେଲୁ ତ ହଜମ ହୋଇନି । ଆମ୍ଳିଳା ହାକୁଟି ଦେଉଛି ।' ପୁଅ ତା ବ୍ରତଘର ଭିଡିଓ ରେକର୍ଡିଂ ସିଡିଟା ଆଣି ଲଗାଇଦେଲା ଟିଭିରେ । ଭୋଜି ଅଧ୍ୟାୟ ଆସିବାବେଳକୁ ପତ୍ନୀ ଆମର ବେଳେ ବେଳେ ଲଟେରି ଜିତିବା ଭଳି ଚିଲାଇ ଉଠୁଥାନ୍ତି, 'ହେଇ ଦେଖ, ପଣ୍ଡାବାବୁଙ୍କ ମିସେସ୍ ଆସିଥିଲେ  ରୁନି ଭାଉଜ ଓ ଭାଇନା ହେଇ ସେ କଡ଼ରେ ଠିଆ ହୋଇଛନ୍ତି ।' ଏପଟେ ପତ୍ନୀ ମୋର ଟିଭିଟାକୁ ଅନାଉଥାନ୍ତି, ସେପଟେ ଦୁଇ ହାତରେ ଭଗବାନ ନୃସିଂହ ହିରଣ୍ୟକଶିପୁର ଛାତି ବିଦାରିବା ଭଳି ଉପହାର ପ୍ୟାକେଟ୍‌ଗୁଡ଼ାକୁ ଚିରିପକାଉଥାନ୍ତି । ଏତିକିବେଳକୁ

ଗୋଟାଏ ଲଫାପା ମୋ ହାତରେ ପଡ଼ିଗଲା । ଦେଖିବାବେଳକୁ ବନ୍ଧୁ ଅଗାଧୁ ସାହୁଙ୍କ ନାଁ । ଆସିଥିଲେ ରାଉରକେଲାରୁ । ଦେଇଛନ୍ତି ୧୦୦ ଟଙ୍କା । ପତ୍ନୀ ସେପଟରୁ କହିଲେ - ଚଳିବ । ପରେ ପରେ କଟିକିଆ ବନ୍ଧୁ ସର୍ବଗ୍ରାସୀର । ଲଫାପା ଖୋଲିବାବେଳକୁ ୧୧ଟଙ୍କା । ପୁଅ କହିଲା, 'ବାବା ଅଙ୍କଲଙ୍କୁ ମୁଁ ଦେଖିଛି, ହେଲେ ଆଣ୍ଟି, ଚିନୁ ଦିଦି, ଦିପୁଙ୍କୁ ଛାଡ଼ିଦେଲେ ତାଙ୍କ ସାଙ୍ଗରେ ଅନ୍ୟ ଯେଉଁମାନେ ଆସିଥିଲେ ସେମାନଙ୍କୁ ଚିହ୍ନିନି । ମୁଁ ଚଟାପଟ୍ କହିଲି, 'ଆରେ ବାବା ଦେଖିଲୁ ସେ ସର୍ବଗ୍ରାସୀ ଓ ତା' କମ୍ପାନୀ ଭିଡିଓ କ୍ୟାମେରା ପଞ୍ଝା ଭିତରେ ଅଛନ୍ତି ନା ନାହିଁ । ପୁଅ କହିଲା ଅଛନ୍ତି ବାବା । ଫରଓ୍ୱାର୍ଡ୍, ରିଭ୍ୟୁ ମାରି ମାରି ପୁଅ ବାହାର କଲା । ସର୍ବଗ୍ରାସୀ ସାଙ୍ଗରେ ଆସିଛନ୍ତି ୧୦ ଜଣ । ମାନେ ପୂରା ୧୧ ଜଣ । ଦେଇଛି ୧୧ ଟଙ୍କା । ବହେ ଶୋଧିଲି ।

ଯଦୁ ମଉସା ବିରକ୍ତ ହୋଇ କହିଲେ, 'ହଇରେ, ତୁମେ ଯେତେବେଳେ ନିମନ୍ତ୍ରଣ ପତ୍ର ଲେଖୁଚ, ସେଥିରେ ସବାନ୍ଧବେ, ସପରିବାରେ ଆସିବା ପାଇଁ ଅନୁରୋଧ କରୁଛ ନା ନାହିଁ ? ସେମାନେ ଆସିଲେ, କ୍ଷତି କ'ଣ ହେଲା ।' ମୁଁ କହିଲି, 'ନାଇଁ ଯେ ସପରିବାରେ ଆସିବେ ପୁଣି ୧୧ଟଙ୍କା ଦେବେ ।' ପତ୍ନୀ ଚିହିଙ୍କି ଉଠି କହିଲେ, ତ' ତାଙ୍କର କ'ଣ ଟିକେ ବିବେକ ନାହିଁ ।' ମାଉସୀ ଏଥର ନରମ ଗଳାରେ କହିଲେ, 'ତୁମେ ଯେତେବେଳେ ପୁଅ ବାହାଘର କରିବ ସେତେବେଳେ ନିମନ୍ତ୍ରଣ ପତ୍ରରେ ଲେଖିବ - ଆପଣ ଆସନ୍ତୁ, ଆସିଲାବେଳେ ଅତି କମ୍‌ରେ ଶହେ ଟଙ୍କିଆ ନୋଟ୍‌ଟିଏ ଲଫାପାରେ ଭରି ଆସନ୍ତୁ, ଆଉ ଏକୁଟିଆ ଆସନ୍ତୁ ।'



# ଛାରପୋକର ଆତ୍ମ କାହାଣୀ

ଆପଣମାନେ ବଡ଼ବଡ଼ ଲୋକଙ୍କ ଆତ୍ମଜୀବନୀ, ବଡ଼ବଡ଼ ଜୀବଙ୍କ ଆତ୍ମକାହାଣୀ ପଢ଼ିଚନ୍ତି । ମୁଁ ଅତି ସାମାନ୍ୟ, ନଗଣ୍ୟ, ତୁଚ୍ଛ, ଛାରପୋକଟିଏ । ମୋର ବି ଜୀବନ ଅଛି, ଜୀବନର କାହାଣୀ ଅଛି, କାହାଣୀର ସୁଖଦ ଦୁଃଖଦ ଅନୁଭୂତି ଅଛି । ହେୟଜ୍ଞାନ ନକରି ଯଦି ମୋ ଆତ୍ମକାହାଣୀକୁ ଶେଷ ଯାଏ ପଢ଼ନ୍ତେ, ମୋ ଶ୍ରମ ସାର୍ଥକ ହୁଅନ୍ତା ।

ମୋର ଜନ୍ମବୃତ୍ତାନ୍ତ ମତେ ଜଣାନାହିଁ । କେବଳ ଏତିକି ଜାଣିଚି- ମୋ ଆଖି ଖୋଲିଲା ବେଳକୁ ଗୋଟେ ଗରିବ ଖଟିଖିଆ ମୂଲିଆର ଦଉଡ଼ିବୁଣା ଖଟିଆରେ ନିଜକୁ ଆବିଷ୍କାର କରିଥିଲି । ମୁଁ ମୋ ଭାଇ-ଭଉଣୀ, ବନ୍ଧୁ-ବାନ୍ଧବଙ୍କ ସହ ମୂଲିଆ ଦେହରୁ ରକ୍ତ ଶୋଷୁ । ସେଇ ରକ୍ତର ସ୍ୱାଦ ଆଜି ବି ମୋର ମନେ ଅଛି - ରକ୍ତ ତ ଲୁଣିଆ ପୁଣି ତା' ସାଙ୍ଗରେ ଖଟିଖିଆ ଦେହର ଛାଳ- ସ୍ୱାଦଟା ନିହାତି ଖାରୁଆ । ଯେହେତୁ ପିଲାବେଳୁ ସେଇ ସ୍ୱାଦ ସହ ଆରେଇ ଯାଇଥିଲି, ମତେ ତେଣୁ ସେତେବେଳେ କିଛି ଖରାପ ଲାଗୁନଥିଲା ।

ଦିନେ ମୂଲିଆର ବାତରା ପୁଅର ପେଣ୍ଟ(ପ୍ୟାଣ୍ଟ) ଭାଙ୍ଗରେ ରହିଯାଇଥାଏ । ବାତରା ପୁଅ ସିନେମା ଦେଖିବାକୁ ହଲ୍ ଯାଇଥିଲା, ମୁଁ ତା' ସହ ଚାଲିଯାଇଥିଲି । ସେଇଠି ତା' ପେଣ୍ଟ ଭାଙ୍ଗ ସନ୍ଧିରୁ ଓହ୍ଲେଇ ଅନ୍ୟମାନଙ୍କ ରକ୍ତ ଚାଖିଲି । ସ୍ୱାଦରେ ଫରକ ବୁଝିଲି । ସିନେମା ହଲର ଚଉକି ସନ୍ଧିରେ ବେଶ୍ କିଛି ଦିନ ରହିଗଲି । ଏଠିକାର ଅନୁଭୂତି ନିଆରା । ଏଇଠିକି ବିଭିନ୍ନ ପ୍ରକାର ଦର୍ଶକ ଆସନ୍ତି । ଯାଙ୍କ

ଦେହରୁ ରକ୍ତ ଶୋଷିବା ବି ବିପଦଜନକ । ମୂଲିଆ ସିନା ହାଲିଆ ହେଇ ଶୋଇଯାଉଥିଲା ଯେ ମୁଁ ରକ୍ତ ଶୋଷିଲାବେଳେ ଜମାରୁ ଜାଣିପାରୁନଥିଲା; କିନ୍ତୁ ସିନେମା ହଲ୍‌ରେ ଏମାନଙ୍କ ଟିପଦଲା, ମଚଳାରେ ପ୍ରାଣ ହରେଇବାର ସକଳ ସମ୍ଭାବନା ଥିଲା ।

ସ୍ୱାମୀ-ସ୍ତ୍ରୀ, ପ୍ରେମିକ-ପ୍ରେମିକା, ଚାକିରିଆ-ବେକାରିଆ । ସମସ୍ତଙ୍କ ଦେହରୁ ମୁଁ ରକ୍ତ ଶୋଷିଚି । ସିନେମା ହଲକୁ ଆସିଥିବା ସ୍ୱାମୀ-ସ୍ତ୍ରୀଙ୍କ ଦେହରୁ ରକ୍ତ ଶୋଷିଲାବେଳେ ସ୍ୱାମୀଙ୍କ ଟିପ ଆଘାତରେ ଦିନେ ମରିଯାଇଥାନ୍ତି, ଅଳ୍ପକେ ବର୍ତ୍ତିଗଲି । କିନ୍ତୁ ଥରେ ନୁନ୍ ଶୋ'ରେ ମୁଁ ଖୁବ୍ ମଜା ଲୁଟିଥିଲି । ଦି'ଜଣ ପ୍ରେମିକ-ପ୍ରେମିକାଙ୍କ ମଝିରେ ଚାପି ହେଇ ଥର ଥର କରି ଦିହିଁଙ୍କ ରକ୍ତ ଖାଇଚି । ସେମାନେ ଏଭଳି ଅନ୍ୟମନସ୍କ ଥିଲେ ଯେ ମୋ କାମୁଡ଼ାର ଯନ୍ତ୍ରଣାକୁ ଟିକେ ବି ଖାତିର କରିନଥିଲେ । ଏବେ ବି ସେ କଥା ମନେ ପଡ଼ିଲେ ଦେହ ଉଲୁସି ଉଠୁଚି ।

ସଂସାରରେ କା' ଜୀବନରେ ମୋଡ଼ କେତେବେଳେ ବଦଳି ଯାଏ ସେ ନିଜେ ବି ଜାଣି ନଥାଏ । ମୋ ଜୀବନରେ ବି ତାହା ହିଁ ଘଟିଲା । ମାଟିନ୍ ଶୋ'କୁ ଜଣେ ସରକାରୀ କର୍ମଚାରୀ ଅଧା ଅଫିସରୁ ଖସିଆସି ସିନେମା ହଲକୁ ପଶିଆସିଥିଲେ । ତାଙ୍କରି ଦେହରୁ ରକ୍ତ ଶୋଷିବାକୁ ଯାଇ ତାଙ୍କ ଜାମାରେ ରହି ଗୋଟେ ସର୍କାରୀ ଅଫିସ୍‌ରେ ଆସି ପହଞ୍ଚିଗଲି ।

ସର୍କାରୀ ଅଫିସ୍‌କୁ ଆସି ପିଅନ, କିରାଣିଠୁ ଆରମ୍ଭ କରି ହାକିମଙ୍କ ଯାଏଁ ସମସ୍ତଙ୍କ ରକ୍ତ ଚାଖିଲି । ପରିସ୍ଥିତିରେ ପଡ଼ି ଏଇଠି ମତେ ଗୋଟେ ଦୀକ୍ଷା ନେବାକୁ ପଡ଼ିଲା - ଦିନଯାକ ରକ୍ତ ଶୋଷ, ରାତିକୁ ଉପାସ । ଏଠି କିନ୍ତୁ ଲୁଚି ରହିବା ପାଇଁ ଢେର ଜାଗା । କେବେ ଚଉକି ସନ୍ଧିରେ, କେବେ ଟେବୁଲ ଫାଙ୍କରେ ତ କେବେ କାଗଜ ଗଦାରେ । ଆଉ ପଶୁ ପଶୁ ଗୋଟାଏ ଫାଇଲ ଭିତରେ ପଶିଗଲି । କର୍ମଚାରୀ ଜଣେ ଫାଇଲଟିକୁ ବାନ୍ଧିଦେଲେ । ମୁଁ ଏ ଦେଶର ମଣିଷ ହେଇଥିଲେ ସିନା ଜାଣିଥାନ୍ତି ଯେ ସର୍କାରୀ ଅଫିସରେ ଫାଇଲ ଥରେ ବନ୍ଧା ହେଲେ ବର୍ଷ ବର୍ଷ ପରେ ଖୋଲେ । ମୁଁ ତ ଛାର ଛାରପୋକଟିଏ, ସେକଥା କାହୁଁ ଜାଣିବି । ପରଦିନ

ଖୋଲା ହେବାର ଆଶା ନେଇ ଫାଇଲ ଭିତରେ ଜାକି ମାଡ଼ି ହେଇ ଶୋଇପଡ଼ିଲି । ପୂରା ଏକୋଇଶ ଦିନ ପରେ ଜଣେ ମନ୍ତ୍ରୀଙ୍କ ଚାପରେ ଫାଇଲ ଖୋଲାହେଲା । ତା'ପରେ ମନ୍ତ୍ରୀଙ୍କ ଚାମ୍‌ଚାଙ୍କ ହାତର ଚିରକୁଟି ଦେଇ ପହଞ୍ଚିଲି ତାଙ୍କ ଡକ୍ୟୁମେଣ୍ଟ ଫୋଲ୍ଡର ଭିତରେ । ଫୋଲ୍ଡର ପହଞ୍ଚିଲା ମନ୍ତ୍ରୀ ଦପ୍ତରରେ ଆଉ ମୁଁ ବି ।

ଯାହା ଭାଗ୍ୟରେ ରାଜଯୋଗ ଲେଖାଅଛି, ତାକୁ ବା ଅନ୍ୟଥା କରିବ କିଏ ! ଏକୋଇଶ ଦିନ ଉପାସର ଫଳ ନା ପୂର୍ବ ଜନ୍ମର ସୁକୃତ - ମତେ ଜଣା ନାହିଁ । ମୁଁ ଏବେ ମନ୍ତ୍ରୀଙ୍କ ଚଉକିରେ । ମନ୍ତ୍ରୀଙ୍କ ଦେହରୁ ରକ୍ତ ପିଉଚି; ଏକ କାଳୀନ ସବୁ ଲୋକଙ୍କ ରକ୍ତର ସ୍ୱାଦ ଜଣକ ଦେହରୁ ପାଉଚି ।



# ଭାବକୁ ନିକଟ ଭାଷାକୁ ଦୂର

**ମୋ** ବଡ଼ ଭାଇ ଆର୍ମିରେ ଚାକିରି କରନ୍ତି । ଦିଲ୍ଲୀରେ ପାଲମଗାଉଁ ଆର୍ମି କ୍ୱାଟର୍ସରେ ରହନ୍ତି । ତାଙ୍କ ସାମ୍ନାଘରେ ଜଣେ କେରଳୀ ରହନ୍ତି । ଭାଇଙ୍କର ଶାଶୂ ମାସଟିଏ ପାଇଁ ଦିଲ୍ଲୀ ଯାଇଥିଲେ । ସାମ୍‌ନା କେରଳୀବାବୁଙ୍କ ମାଆ ବି କିଛି ଦିନ ପାଇଁ ଦିଲ୍ଲୀ ଆସିଥିଲେ । ଦି ବୁଢ଼ୀଙ୍କର ସମୟ କଟୁନଥିଲା । ସଂଧ୍ୟାବେଳେ ଇଏ ତାଙ୍କ ୮/୯ ମାସର ନାତିକୁ ନେଇ ଛାତ ଉପରକୁ ଚାଲିଯାଆନ୍ତି ଆଉ କେରଳୀ ବୁଢ଼ୀ ବି ତାଙ୍କ ନାତି ନାତୁଣୀକୁ ନେଇ ଛାତକୁ ଯାଆନ୍ତି । ଭାଇଙ୍କ ମନରେ ଦିନେ ଅଜବ ପ୍ରଶ୍ନଟିଏ ଉଙ୍କିମାରିଲା । ତାଙ୍କ ଶାଶୂ ଓଡ଼ିଆ ଛଡ଼ା ଆଉ କୋଉ ଭାଷା ଜାଣନ୍ତି ନାହିଁ । କେରଳୀ ବୁଢ଼ୀଙ୍କୁ ବି କେରଳୀ ଛଡ଼ା ଆଉ କିଛି ଜଣା ନାହିଁ । ଦୁଇଜଣ ଉପରେ କ'ଣ କରୁଥିବେ, କେମିତି କଥାବାର୍ତ୍ତା ହେଉଥିବେ ? ପିଲା ଦି'ଟାଙ୍କର ସିନା କିଛି ଭାଷା ନାଇଁ ଟା ଟା, ଲା ଲା, ପା ପା କହି କାମ ଚଳାଇ ଦେଉଥିବେ, ହେଲେ  ଏ ଦିଜଣଙ୍କ ପାଇଁ ତ ଭାଷା ଗୋଟେ ବଡ଼ ସମସ୍ୟା । ଏ କଥା ଶାଶୂଙ୍କୁ ଭାଇ ପଚାରିବେ କେମିତି ?

ଶାଶୂ ଯୋଉ ଦିନ ଓଡ଼ିଶା ଫେରିଆସିବା କଥା ତା'ଆଗ ଦିନ ଭାଇ ଯାଇ ଛାତ କବାଟ ପାଖରେ ଲୁଚିକି ଠିଆହେଲେ । ଦି'ବୁଢ଼ୀଙ୍କ କଥାବାର୍ତ୍ତା ଶୁଣିବା ପାଇଁ ମନରେ ଏକ ଅହେତୁକ ଆଗ୍ରହ । ଶାଶୂ କେରଳୀ ବୁଢ଼ୀଙ୍କୁ କହିଲେ, 'କାଲି ତ ମୁଁ ଓଡ଼ିଶା ପଳେଇବି, ମତେ ମନେରଖିଥିବ । ଗାଳି ଦେଉଥିବ ।' କେରଳୀ

ବୁଢ଼ୀ ଏହାର ଉତ୍ତରରେ ଆଉ କିଛି କହିଲେ ଯାହା ଭାଇ ବି ବୁଝିପାରି ନଥିଲେ । ଟିକେ ପରେ ଦୁହିଁଙ୍କ ଆଖି ଛଳ ଛଳ ହେଇଗଲା, ଦିହେଁ କୁଣ୍ଢାକୁଣ୍ଢି ହେଲେ । ସେ ତାଙ୍କ ନାତୁଣୀକୁ ଆଉ ସେ ଯାଙ୍କ ନାତିକୁ ଗେଲକରି ଓହ୍ଲାଇ ଆସିଲେ । ଭାଇଙ୍କ ମୁହଁରୁ ଏ ଘଟଣାଟା ଶୁଣିବା ପରେ ମତେ ଲାଗିଲା- ମଣିଷ ଥରେ ଭାବରେ ବାନ୍ଧି ହେଇଗଲେ, ଭାଷା ଆଉ ତାଙ୍କୁ ଦୂରେଇ ପାରେନାହିଁ ।

ତେବେ ଏହି ଭାବ କେମିତି ମରାଠୀ- ବିହାରୀଙ୍କୁ ବାନ୍ଧିପାରୁ ନାହିଁ । ଏ ଭାବ କେମିତି ବଙ୍ଗାଳି- ଓଡ଼ିଆ, ଓଡ଼ିଆ- ମାରୁୱାଡ଼ି, କଟକୀ- ସମ୍ବଲପୁରୀଙ୍କୁ ବାନ୍ଧିପାରୁ ନାହିଁ । ଭାଷାକୁ ନେଇ ଏତେ ବିଭେଦ କାହିଁକି ? ଭାଷା ତ ଭାବ ବିନିମୟର ଏକ ମାଧ୍ୟମ ମାତ୍ର । ଭାବଠୁ ଦୂରେଇ ଭାଷାକୁ ଜାବୁଡ଼ି ଧରିଲେ ମଣିଷ ବଡ଼ ବଡ଼ ଭୁଲ କରିବସେ । ଏବେ ଦିନେ ଆମ ଘରପାଖ ବିହାରୀ ମଉସା ତାଙ୍କ ନାତିକୁ କାଖେଇ ଯାଉଥିଲେ । ଘର ଅଗଣାରେ ମୋ ସ୍ତ୍ରୀ ଠିଆହେଇ ପଚାରିଦେଲେ, ‘ମଉସା ! ପିଲାକୁ ନେଇ କୁଆଡ଼େ ଯାଉଚନ୍ତି ?’ ମଉସା ଟିକେ ଗାଢ଼େଇକି ମୋ ସ୍ତ୍ରୀକୁ ଅନେଇଲେ, ଆଉ ଗରଗର ହେଲେ । ମୁଁ ପଚାରିଲି, ‘ମଉସା କ’ଣ ହେଲା କି ?’ ବୁଢ଼ା କହିଲେ, ‘ଦେଖିୟେ ତୋ, ବହୁମା’ କ୍ୟା ବୋଲ ରହେ ହେଁ । ୟେ ବଚ୍ଚା କ୍ୟା କୁତ୍ତେ କା ପିଲା ଲଗ୍‌ରହା ହୈ ?’ ମୁଁ ମଉସାଙ୍କୁ ବୁଝାଇଦେଲି, ‘ମୋ ସ୍ତ୍ରୀ ହିନ୍ଦୀ ଜାଣନ୍ତି ନାହିଁ, ହିନ୍ଦୀରେ ସିନା କୁକୁର ଛୁଆକୁ ପିଲା କୁହାଯାଏ, ଆମ ଓଡ଼ିଆରେ ମଣିଷ ଛୁଆକୁ ପିଲା କୁହାଯାଏ ।’

ଗୋଟିଏ ଭାଷାରେ ଯାହା ଆଦର ଅନ୍ୟ ଭାଷାରେ ସେଇଟା ଗାଳି । ଗୋଟିଏ ଭାଷାରେ ଯାହା ଶ୍ଳୀଳ, ଆଉ କୋଉ ଭାଷାରେ ତାହା ଅଶ୍ଳୀଳ । ଗୋଟିଏ ଭାଷାରେ ଯାହା ଖାଦ୍ୟ, ଆଉ କୋଉ ଭାଷାରେ ତାହା ଅଖାଦ୍ୟ । ଉପକୂଳ ଅଞ୍ଚଳରୁ ଯାଇ ପଶ୍ଚିମାଞ୍ଚଳରେ ଯଦି କେହି ଛେନା ମାଗେ, ତେବେ ଦୁଧ ତିଆରି ଛେନା ବଦଳରେ, ଗୋବର ତିଆରି ଘସି ପାଇବାର ସମ୍ଭାବନା ଦେଖାଦେଇପାରେ ।

ଯାହା ବି ହେଉ, ଭାରତ ଭଳି ଏକ ବହୁ ଭାଷାଭାଷୀ ଦେଶରେ ଭାଷାକୁ

ନେଇ ଏତେ ଭେଦଭାବ ଦେଖାଦେବା ଉଚିତ ନୁହେଁ । ଭାଷାର ଏତେ ବିବିଧତା ସତ୍ତ୍ୱେ ଆମେ ଗୋଟିଏ ପରିବାରର । ଆଉ ଆମର ଗୋଟିଏ ପରିବାରରେ ଯେ କେତେ ଭାଷା କୁହାଯାଏ, ତାହାର ଏକ ଛୋଟ ଉଦାହରଣ ସହ ମୁଁ ମୋ ଅଜ୍ଞାନବିଚାରକୁ ଶେଷ କରିବି ।

ମୋ ବାପା ଉପକୂଳ ଅଞ୍ଚଳରୁ ଆସି ଆଠମଲ୍ଲିକରେ ରହିଲେ । ମୋ ମାଆ ବଉଦ ଅଞ୍ଚଳରୁ ଆସିଥିଲେ । ମୋ ବାପାଙ୍କ ସହ କଥାହେବାବେଳେ ମୁଁ ଉପକୂଳିଆ ଭାଷାରେ କଥାହୁଏ, ମାଆଙ୍କ ସହ କଥାହେବାବେଳେ ବଉଦିଆ ଭାଷାରେ କଥାହୁଏ । ସାଇ ପଡ଼ିଶା, ଗାଁ ପିଲାଙ୍କ ସହ ଆଠମଲ୍ଲିକିଆ ଭାଷାରେ କଥା ହୁଏ । କଟକରେ ବାହାହେଇ ମୋ ସ୍ତ୍ରୀ ସହ କଟକୀ ଭାଷାରେ କଥାହୁଏ । ଚାକିରି କରୁଥିବା କେନ୍ଦ୍ର ସରକାରୀ ଅଫିସରେ ଅଣଓଡ଼ିଆଙ୍କ ସାଙ୍ଗେ ହିନ୍ଦୀ ଭାଷାରେ କଥାହୁଏ । ଅଫିସରଙ୍କ ସାଙ୍ଗେ ଇଂରାଜୀରେ କଥାହୁଏ ଆଉ ମୋ ଘରେ ରହୁଥିବା ଠାକୁରଙ୍କ ସାଙ୍ଗେ ସଂସ୍କୃତରେ କଥାହୁଏ ।



# ଭଲଲୋକ

'କିଛି ଭଲଲୋକ ଅଛନ୍ତି ବୋଲି ତ ଦୁନିଆଟା ଚାଲିଚି ।'- ଏଇ କଥାଟି ଆମେ ବହୁ ଲୋକଙ୍କ ମୁହଁରୁ ଶୁଣିଚୁ, ଜାଣିଚୁ, ବେଳେବେଳେ ନିଜେ ବି କହିଚୁ । ତେବେ ଏ ଦୁନିଆରେ ଭଲଲୋକ କହିଲେ ଆମେ କାହାକୁ ବୁଝୁ ? ଯେମିତି ଆଲୁଅକୁ ଜାଣିବାକୁ ହେଲେ ଅନ୍ଧାରକୁ ଜାଣିବା ଜରୁରୀ; ଭଲଲୋକଙ୍କୁ ଜାଣିବାକୁ ହେଲେ ବାଜେଲୋକ, ତେଢ଼ାଲୋକ, ଟିଙ୍ଗାଲୋକ, ବାହାଦୁରିଆଲୋକଙ୍କୁ ବି ଜାଣିବା ସେତିକି ଜରୁରୀ । ଏବେ ଆସନ୍ତୁ ଏ ବାଜେ, ଫାଲତୁ, ତେଢ଼ା ଓ ଟିଙ୍ଗାମାନଙ୍କ ମାଧ୍ୟମରେ ଆମେ କିଛି ଭଲଲୋକଙ୍କୁ ଠାବ କରିବା । ଟିଟିଲାଗଡ଼ରୁ 'କୁମୁଡ଼ା ଉତ୍ସବ' ସାରି ରାୟପୁର ଇଣ୍ଟରସିଟିରେ କଟକ ଫେରୁଥିଲି । ସେଇ ଟ୍ରେନ୍‌ରେ ଆମ ସମାଜର କିଛି ପ୍ରଭାବଶାଳୀ ଲୋକ ବି ଥିଲେ । ମୋର ୱେଟିଂ ଲିଷ୍ଟ ୩ ଥିଲା, କନ୍‌ଫର୍ମ ହୋଇନଥିଲା । ପ୍ରଭାବଶାଳୀ ଲୋକଙ୍କ ସମେତ ମତେ ଭଲପାଉଥିବା ବହୁ ସହଯାତ୍ରୀ ମୋର ସିଟ୍‌ଟେ ପାଇଁ ଟିଟିଇଙ୍କୁ ଅନୁରୋଧ କଲେ । ଟିଟିଇ କିନ୍ତୁ ନଛୋଡ଼ବନ୍ଧା - 'ସିଟ୍ ଥିଲେ ସିନା ଦେବି ? ଯିଏ ଯେତେ ଯାହା କହନ୍ତୁ, ଆଦୌ ହୋଇପାରିବ ନାହିଁ ।' ଟ୍ରେନ୍‌ର ବହୁ ଯାତ୍ରୀ କହିଲେ- ଏଇଟା ପାଗଳଟାଏ, ତେଢ଼ାଲୋକଟା । ଆପଣ ତାକୁ ୧୦୦୦ଟଙ୍କା ଦେଲେ ବି ଶୁଣିବ ନାହିଁ । ସମ୍ବଲପୁର ଯାଏ ଚାଲନ୍ତୁ, ସେଇଠି ଟିଟିଇ ବଦଳିବ, ତାକୁ ୨୦୦ ଟଙ୍କା ଧରେଇ ଦେଲେ ସେ ଆପଣଙ୍କ ପାଇଁ ସିଟ୍‌ଟେ ନିଶ୍ଚୟ କରେଇଦେବ । ଭାରି ଭଲଲୋକଟେ ।

ମୋ ବଡ଼ଭାଇ ଚାକିରି କରନ୍ତି । କାଲି ତାଙ୍କ ବଡ଼ବାବୁଙ୍କ ଉପରେ ବିରକ୍ତ ହେଉଥିଲେ । ଷ୍ଟାଫ୍‌ମାନେ ଡେରିରେ ଆସିଲେ ସେ ହାଜିରା ଖାତାରେ କୁଆଡ଼େ ନାଲିଆ ଗୋଲ ବୁଲେଇ ଦେଉଚି । କିଏ କୋଉ ଦିନ ନ ଆସିଲେ ହାଜିରା ଖାତାରେ ନାଲି ଛକି ମାରିଦେଉଚି, ନିହାତି ଫାଲତୁଲୋକଟାଏ । ୟା'ପୂର୍ବରୁ ଯୋଉ ବଡ଼ବାବୁ ଥିଲେ ସଞ୍ଜରେ କିଏ ଅଫିସ୍ ପହଞ୍ଚିଲେ ବି ହାଜିରା ଖାତା ଫାଙ୍କା ରଖୁଥିଲେ । ପରଦିନ ଆସି ଦସ୍ତଖତ କଲେ ବି କିଛି କହନ୍ତି ନାହିଁ, ଭାରି ଭଲଲୋକ । ମୋ ମଝିଆଁ ଭାଇ ଠିକାଦାରି କରନ୍ତି । ଭାରି ବିଗୁଡୁଥିଲେ ସେ ନୂଆ ଇଂଜିନିୟର ଉପରେ -'୧୦ ଥର ତାଙ୍କ ଘରକୁ ଗଲିଣି, ଝାଡ଼ଫୁଙ୍କ କିଛି ଶୁଣୁନି । କହୁଚି-କାମ ଟିକିନିଖି ଦେଖିବ ତା' ପରେ ଯାଇ ବିଲ୍ ପାସ୍ କରିବ । ଏଡ଼େ ବାଜେ ଲୋକଟାଏ । ପୁରୁଣା ଇଂଜିନିୟର କିନ୍ତୁ ଏମିତିଆ ନୁହଁ, ତାଙ୍କ ପାଖରେ ଯଦି ପି.ସି.ଟା ଯଥା ସମୟରେ ପହଞ୍ଚିଯାଇଚି ସେ ଯଥାଶୀଘ୍ର ବିଲ୍ ପାସ୍ କରିଦେଉଥିଲେ । ସେ ଦୃଷ୍ଟିରୁ ସେ ଭାରି ଭଲଲୋକ ।

ଆମ କଲୋନୀର ଦାସବାବୁ ସାଙ୍ଗେ ଦିନେ ଅଫିସରୁ ଫେରୁଥିଲି । ବାଟରେ ଗୋଟେ ଲୋକର ଗୋଡ଼କୁ କିଏ ହାଣିଦେଇଚି, ଛଟପଟ ହେଇ ରାସ୍ତାରେ ଗଡୁଚି । ମୁଁ ସେଇଠି ଅଟକି ଗଲି । ଦାସବାବୁ କଲୋନୀକୁ ପଳାଇଆସିଲେ । ମୁଁ ଡେରିରେ ପହଞ୍ଚିଲି । ଘରଣୀ ଗରଗର ହେଇ ଡେରିର କାରଣ ପଚାରିଲେ । ମୁଁ ପୂରା ଘଟଣାଟା ବୁଝାଇ ସାରି କହିଲି - 'ଚା' କପେ ଜଲଦି ଦିଅ, ମତେ ପୁଣି ଥାନାବାଲା ଡାକିଚନ୍ତି ସାକ୍ଷୀ ଦେବା ପାଇଁ ।' ଘରଣୀ ବିଗିଡ଼ିକି ଉଛନ୍ନ - 'ତମ ସାଙ୍ଗେ ଦାସବାବୁ ଥିଲେଟି ? ତମେ ଏକୁଟିଆ ଆଗଚଲା ! ଏଡ଼େ ବାହାଦୁରିଆ ଲୋକ ତମେ ! ହଇଓ ! ଭଲଲୋକସାଙ୍ଗେ ମିଶୁଚ, ଟିକେ ଭଲବୁଦ୍ଧି ଶିଖ ।'

ଆମର ଯୌଥ ପରିବାର । ଦିନେ ଭାଉଜ ଅଗଣା ଖରିକିବାବେଳେ ଭିକାରିଟି ଆସି ଭିକ ମାଗିଲା । ଭାଉଜ କହିଲେ- ଆଜି ଗୁରୁବାର ଭିକ ଦେଇ ହବନି । ଭିକାରି ଫେରିଯାଉଥିଲା । ଛାତ ଉପରେ ମୋ ବୋଉ ସବୁ ଦେଖୁଥିଲା । ଭିକାରିକୁ ବଡ଼ ପାଟି କରି କହିଲା - ଯା.... ଆଜି ଗୁରୁବାର ଭିକ ଦେଇ ହେବନି । ଭିକାରି

କହିଲା - ମାଆ ! ବୋଉମା' ତ ଆଗରୁ ମନା କରିସାରିଥିଲେ । ବୋଉ ଏଥର ଗମ୍ଭୀର ହେଇ କହିଲା - ମୁଁ ହେଉଚି ଏ ଘରର ଶାଶୂ । ମୁଁ ଥାଉ ଥାଉ ସେ ମୁହଁପୋଡ଼ି ମନା କରିବାକୁ କିଏ ? ଭାଉଜ ସାଙ୍ଗେ ସାଙ୍ଗେ ନିଜ ଭୁଲ ପାଇଁ ବୋଉକୁ କ୍ଷମା ମାଗିଲେ । ମୋ ସ୍ତ୍ରୀ ସେଇଠି ଥିଲେ  ବୋଉକୁ କେବେ ଛାଡ଼ି ନଥାନ୍ତେ । ଭୁଲ ନଥିଲେ ସେ କ୍ଷମା ମାଗନ୍ତି ନାହିଁ ଆଉ ଦମ୍ଭରେ ଉତ୍ତର ଦିଅନ୍ତି । ସେଥିପାଇଁ ତ ସମସ୍ତେ ତାଙ୍କୁ ମୁହଁଖୋର ବୋଲି କହନ୍ତି ଆଉ ଭୁଲ ନଥାଇ କ୍ଷମାମାଗୁଥିବା ବଡ଼ଭାଉଜଙ୍କୁ ଭଲବୋହୂ କହନ୍ତି ।

ଭଲଲୋକଙ୍କ ଏତେ ଉଦାହରଣ ପାଇବା ପରେ ଆପଣ ପୁଣି କହିବେ ଯେ - କିଛି ଭଲଲୋକଙ୍କ ପାଇଁ ଏ ଦୁନିଆ ଚାଲିଚି ? ନା- କିଛି ବାଢେ଼ ଲୋକ, ଟେଢ଼ା ଲୋକ, ବାହାଦୁରିଆ ଲୋକଙ୍କ ପାଇଁ ହିଁ ଏ ଦୁନିଆ ଚାଲିଚି ।



# ସମବେଦନା

ପୁଅକୁ ଜର । ପାଞ୍ଚଦିନ ଥଣ୍ଡା ରହିଲା ପରେ ଜର ହେଇ ଏବେ ନିମୋନିଆ ରିପୋର୍ଟ ଆସିଚି । ସାଙ୍ଗସାଥୀ, ସାଇପଡ଼ିଶା, ବନ୍ଧୁବାନ୍ଧବ ସମସ୍ତେ ଆସୁଚନ୍ତି ପୁଅକୁ ଦେଖିବା ପାଇଁ । ଏମିତିଆ ସମୟରେ ଏମାନଙ୍କ ସମବେଦନା ଟିକକ ଆମପାଇଁ କେରାମିନ୍ ଇଂଜେକ୍ସନ ଭଳି କାମକରେ କିନ୍ତୁ କିଛି ଲୋକଙ୍କ ସମବେଦନା ବେଳେବେଳେ ଏତେ ବେଦନାଦାୟକ, ଅଙ୍ଗେନିଭେଇଥିବା ଲୋକହିଁ ବୁଝିପାରିବେ ।

ଜଣେ ବନ୍ଧୁ ଘରେ ପଶୁପଶୁ ଆରମ୍ଭ କଲେ- 'କ'ଣ ଭାଇ ! ପାଞ୍ଚଦିନ ହେଲା ପିଲାକୁ ଜର, ଆପଣଙ୍କ ଭଳିଆ ଶିକ୍ଷିତ ଲୋକ ଡାକ୍ତର ନଦେଖେଇ ନ୍ୟୁମୋନିଆ ହେବାଯାଏଁ କଥା ଗଲା !' ମୁଁ ମୁହଁ ଶୁଖେଇ କହିଲି - 'ଡାକ୍ତର ଦେଖେଇଥିଲି ଆଜ୍ଞା ! ସାଧାରଣ ଥଣ୍ଡା ବୋଲି ମୋର ଧାରଣା ଥିଲା । ଡାକ୍ତର ବି ତ ଏଇ ଔଷଧ ଦେଇଥିଲେ ।' ପାଖରେ ଥିବା ଆଉଜଣେ ବନ୍ଧୁ ଡାକ୍ତରଙ୍କ ନାଁ ପଚାରିବାରୁ ମୁଁ ଆମ ସାହିରେ ଥିବା ଜଣେ ଏମବିବିଏସ୍ ଡିଗ୍ରୀଧାରୀଙ୍କ ନାଁ କହିଲି । ବନ୍ଧୁ ଏଥର ଆଉଟିକେ ଚିତ୍କାର କରି କହିଲେ- 'ଆପଣ ଏଇ କଟକରେ ରହୁଚନ୍ତି ଟି? ଗାଆଁରୁ ପରା ଲୋକ ଆସି ଏଠି ଅମକ ଦାସ, ସମକ ରଥ, ଚାନ୍ଦି ମହାନ୍ତି ଆଦି ସ୍ପେସାଲିଷ୍ଟଙ୍କୁ ଦେଖେଇ ଭଲ ହେଇଯାଉଚନ୍ତି । ଛୁଆ ପାଇଁ ଏତେ ହେଳା କଲେ ହବ?'

ଆଜ୍ଞା ! ଆଜିକାଲି ସମସ୍ତେ ଏମିତିଆ ଦଶ-ପନ୍ଦର ସ୍ପେସାଲିଷ୍ଟଙ୍କ ନାଁ ମୁଖସ୍ଥ କରି ରଖିଚନ୍ତି । ମୁଁ କିନ୍ତୁ ଜାଣିନଥିଲି ଯେ ଥଣ୍ଡା ଟିକେ ହଉ ହଉ ସିଧାସଳଖ ଏଇ ସ୍ପେସାଲିଷ୍ଟଙ୍କୁ ହିଁ ଦେଖେଇବା କଥା ବୋଲି । ଛାଡ଼ନ୍ତୁ, ବେଳା ଖରାପ ଯେତେବେଳେ ସବୁ ଶୁଣିବାକୁ ପଡ଼ିବ । କିଏ କେତେ କଥା କହିବେ । ଜଣେ ତ କହିଲେ - ମୂଳରୁ ଯଦି ତମେ ଗରମ ସୋରିଷ ତେଲରେ ରସୁଣ ଫୁଟେଇ ପାଦରେ

ଘଷିଥାଆନ୍ତ, ଏଯାଏଁ କଥା ଆସିନଥାନ୍ତା । ଆଉଜଣେ କହିଲେ - ମୂଳରୁ ହୋମିଓପାଥି କରିଥିଲେ.... ଇତ୍ୟାଦି ଇତ୍ୟାଦି । ଏହି ସମବେଦନାକାରୀ ବନ୍ଧୁମାନଙ୍କ କଥା ଶୁଣି ଥରେ ମୋର ଜଣେ ବନ୍ଧୁ ପରିହାସ ଛଳରେ ପଚାରିଥିବା ପ୍ରଶ୍ନଟି ପୁଣି ମନେ ପଡ଼ିଲା । ବନ୍ଧୁ ପଚାରିଲା - 'ଆଚ୍ଛା ଜ୍ଞାନ ! ସାଧାରଣଜ୍ଞାନଟିଏ କହିପାରିବୁ ? ମୁଁ ମୁଣ୍ଡ ଟୁଙ୍ଗାରିବାରୁ ସେ ପଚାରିଲା - କହିଲୁ, ବିଶ୍ୱରେ ସବୁଠୁ ଅଧିକ ଲୋକ କୋଉ ପ୍ରଫେସନରେ ଅଛନ୍ତି ? ମୁଁ ଘାବରେଇଗଲି । ସେ ହସିଦେଇ କହିଲା - ମେଡିସିନ୍ ପ୍ରଫେସନରେ । ଦେଖୁନୁ, ଯାହାକୁ ପଚାରିବୁ- ଆଜ୍ଞା ! ମୋର ଅମକ ହେଉଛି, ସେ ଚଟାପଟ୍ ଗୋଟିଏ ଔଷଧର ନାଁ ବତାଇଦେବ ଓ ସେ ଔଷଧ ଓ ତାକୁ ପ୍ରସ୍ତୁତ କରୁଥିବା କମ୍ପାନୀର ପୂରା ପ୍ରଚାର ପାଇଁ ବିଜ୍ଞାପନଟିଏ ମଧ୍ୟ ଥୋଇଦେବ । ସତେ ଯେମିତି ସେ ଔଷଧ ବିକ୍ରିର କମିସନରୁ ୟା'ପାଖକୁ ବି କିଛି ଅଂଶ ଆସୁଛି ! କାହାର କିଛି ଅଘଟଣ ଘଟିଗଲେ କିଛି ଲୋକଙ୍କ ମୁହଁ ଖଜବଜ ହୁଏ କିଛି ଗୋଟାଏ କହିବା ପାଇଁ । ସେଇମାନେ ଏଇ ଅବସ୍ଥାକୁ ବୋଧେ ମଉକା ଭାବିଥାଆନ୍ତି ।

ଉଦାହରଣସ୍ୱରୂପ ଆମ ପଡ଼ିଶା ରଥବାବୁଙ୍କଘରୁ ଚୋରି ଘଟଣା । ସପରିବାର ସନ୍ଧ୍ୟାବେଳେ ଏଇ କଟକ ଭିତରେ ଜଣଙ୍କ ଘରକୁ ଭୋଜିଖାଇ ଯାଇଥିଲେ ରଥବାବୁ । ଫେରିଲାବେଳକୁ ଘର କବାଟ ମେଲା, ଘରୁ ଚୋରି ହେଇଯାଇଚି । ସକାଳୁ ଖବର ପାଇ ଘରେ ଶୁଭାକାଙ୍‌କ୍ଷୀମାନଙ୍କ ଭିଡ଼ । ଜଣେ ପଚାରିଲେ- ରଥବାବୁ ! ଘରୁ କ'ଣ ସମସ୍ତେ ପଳେଇଥିଲେ ଭୋଜି ଖାଇବାକୁ ? ଜଣେ ବି ଘରେ ନଥିଲେ ? ଜାଣୁଚନ୍ତି ତ ଏକୁଟିଆ ଘର । କୋଉ ହିସାବରେ ସମସ୍ତେ ଘରଛାଡ଼ି ପଳଉଥିଲେ !' ଆଉଜଣେ ପଚାରିଲେ-ଆଲମିରା ଚୋର ଖୋଲିଲା କେମିତି ? ଚାବିଟା କୋଉଠି ଥିଲା ? ରଥବାବୁ ସଂକ୍ଷିପ୍ତ ଉତ୍ତରଦେଲେ ତକିଆତଳେ । ଭଦ୍ରଲୋକ ଛିଗୁଲେଇ କହିଲେ- 'ଭଲ, ଚୋର ହାତରେ ତ ଚାବି ଧରେଇଦେଇ ଥାଆନ୍ତେ ।' ଆଉ ଜଣେ ବନ୍ଧୁ ଚୋରି ପରିମାଣ ପଚାରନ୍ତେ ରଥବାବୁ କହିଲେ, 'କୋଡ଼ିଏ ଭରି ସୁନା ।' ସେ ବି ବିରକ୍ତ ହେଇ କହିଲେ- ଆଜିକାଲି

ଯୋଡ଼ ଯୁଗ । ଏତେ ସୁନା ଆପଣ ଘରେ ରଖୁଥିଲେ କେମିତି? ଲକର୍‌ରେ ରଖିବା କଥା ନାଁ ?' ମୁଁ ବି ଯାଇଥିଲି ରଥବାବୁଙ୍କୁ ସମବେଦନା ଜଣେଇବା ପାଇଁ । ତାଙ୍କ ସହ ମିଶି ଥାନାକୁ ବି ଯାଇଥିଲି । ସନ୍ଦେହରେ ଧରାହେଇଥିବା ଚୋରଠୁ ବି ଥାନାରେ ବେଶି ଜେରାକରାଗଲା ରଥବାବୁଙ୍କୁ । ଶୁଭେଚ୍ଛୁଙ୍କଠାରୁ ଆରମ୍ଭ କରି ଏହି ଥାନାବାଲାଙ୍କର ଜେରା ସବୁ ଶୁଣିଲା ପରେ ମୋର ସନ୍ଦେହ ହେଲା - ରଥବାବୁଙ୍କ ଘରୁ ଚୋରି ହେଇଚି ନା ରଥବାବୁ ନିଜେ ଗୋଟାଏ ଚୋର !

ପିଲାର ଅସୁସ୍ଥତା, ଘରୁ ଚୋରି ଭଳି ଆଉ ଏକ ଘଟଣା ହେଉଚି ସଡ଼କ ଦୁର୍ଘଟଣା । ସମ୍ପ୍ରତି ନୂଆବର୍ଷରେ ଏଭଳି ଏକ ଦୁର୍ଘଟଣାରୁ ମୁଁ ମୋ ପରିବାର ଅଳ୍ପକେ ବଞ୍ଚିଗଲୁ । ବହୁ ଶୁଭେଚ୍ଛୁ ସମବେଦନା ଜଣେଇବା ପାଇଁ ଘଟଣାସ୍ଥଳରୁ ଘରଯାଏ ଆସିଥିଲେ । କେହି ବନ୍ଧୁ ମୋ ପରିବାରକୁ ଘରେ ପହଞ୍ଚେଇ ଦେଇଥିଲେ ତ କେହି ଈଶ୍ୱରଙ୍କୁ ଧନ୍ୟବାଦ ଜଣେଇଥିଲେ ଆମ୍ଭମାନଙ୍କର ଜୀବନରକ୍ଷା ପାଇଁ । ସମ୍ବେଦନଶୀଳ ହେଇ ଅସୁବିଧାରେ ପଡ଼ିଥିବା ଲୋକ ସହ ବ୍ୟବହାରକୁ ହିଁ ସମବେଦନା କୁହାଯାଏ ।

ପିଲାର ଅସୁସ୍ଥତା, ଘରୁ ଚୋରି କିମ୍ୱା ଦୁର୍ଘଟଣା ହେଲା ପରେ ଯେ ଜଣେ ମନସ୍ତାପ କରୁନଥିବ, ନିଜେ ବେଦନା ଭୋଗୁନଥିବ ଏଭଳି କେବେ ଘଟେ ନାହିଁ । ଏ ପରିସ୍ଥିତିରେ ଜଣେ ଯେତିକି ବେଦନା ଭୋଗୁଚି, ତା' ଉପରେ ଏଣୁ ତେଣୁ କହି ସେତିକି (ସମାନ) ବେଦନା ଯୋଡ଼ିଦେବାକୁ ଯଦି ଜଣେ ସମବେଦନା ଭାବେ , ତେବେ କାହାକୁ କହିବା ?



# ମୁଁ କାହାକୁ ଦେବି ମନ ?

ଆମର ଛାପାଖାନାଟାଏ ଥିଲା । ବାହାଘର ଋତୁରେ ନିମନ୍ତ୍ରଣ- ପତ୍ର ଛପାହୁଏ । ଇଲେକ୍ସନ ସମୟରେ ଲିଫ୍‌ଲେଟ୍ । ବାକି ସମୟରେ ଫାଙ୍କା । ମୋ ମୁଣ୍ଡରେ ଥରେ ଅକଲ ଜୁଟିଲା । ହଜାରେ କାଗଜନେଇ ଛାପିଦେଲି- 'ଶ୍ରୀ ଶ୍ରୀ ଶ୍ରୀ ମା' ଅମୁକେଇ ଦେବୀଙ୍କ କରୁଣା.... ଏହି ପତ୍ରରୁ ଏକ ହଜାର ବାଣ୍ଟିବାରୁ ଜଣଙ୍କର ଅଭିଆଡ଼ି ଝିଅ ବାହା ହେଇଗଲା । ଦଶ ହଜାର ବାଣ୍ଟିବାରୁ ଜଣେ ଦୁଇ ଲକ୍ଷ ଟଙ୍କାର ଲଟେରୀ ଜିତିଲା । ହେୟ ଜ୍ଞାନ କରି ପତ୍ରକୁ ଚିରିଦେବାରୁ ଜଣଙ୍କର ବଡ଼ ପୁଅ ମରିଗଲା ।' ତା'ପରଦିନ ଏହାକୁ ବଜାରକୁ ଛାଡ଼ିଦେଲି । ଛାପାଖାନାରେ ଭିଡ଼ ବଢ଼ିଗଲା, ବେପାର ଜମିଗଲା ।

ଠିକ୍ ସେଇଭଳି, ଦଶ-ପନ୍ଦର ବର୍ଷ ପୂର୍ବରୁ କିଛି ବଡ଼ବଡ଼ ଛାପା ବେପାରୀଙ୍କ ମୁଣ୍ଡରେ ଏଭଳି ଦୁର୍ବୁଦ୍ଧି ଜୁଟିଲା । ସେମାନେ ଆଗରୁ 'ଜନ୍ମଦିନ ଶୁଭେଚ୍ଛା', 'ବିବାହବାର୍ଷିକୀ ଶୁଭେଚ୍ଛା' କାର୍ଡ଼ ତିଆରିକରି ବେପାର କରୁଥିଲେ । ହଠାତ୍ ଗୋଟାଏ ଫେବୃୟାରୀ ଚଉଦରେ ସେମାନେ 'ଭାଲେନ୍‌ଟାଇନ୍ ଡେ' ନାଆଁରେ ପାନପତରରେ ତୀରମାରି ପ୍ରେମ ନିବେଦନର କିଛି ଶବ୍ଦ ଲେଖି କାର୍ଡ଼ ତିଆରି ଆରମ୍ଭ କଲେ । ସରଳ ତରଳ ଯୁବମନକୁ ପୁଲକିତ କରାଇ ବେପାର ଜମେଇ ଦେଲେ ।

ଆଜ୍ଞା । ଆମେ ପଢ଼ାପଢ଼ି କରି ଜାଣିଚୁ ଯେ ଷୋଡଶ ଶତାବ୍ଦୀରୁ ଏଇ ଭାଲେନ୍‌ଟାଇନ୍ ଡେ ପାଳନ ହେଲାଣି; କିନ୍ତୁ ଆମେ ଦେଶରେ ଇଂରେଜ ରାଜୁତିର ତିନିଶ' ବର୍ଷ ଭିତରେ ବି ଏହା ପାଳିତ ହେଲାନାହିଁ । ମୁନାଫାଖୋର୍ ବେପାରୀ ମନୋଭାବରୁ ଏଇ କେଇ ବର୍ଷ ହେଲା ଆମ ଦେଶରେ ଜୋରସୋରରେ ଭାଲେନ୍‌ଟାଇନ୍ ଡେ' ପାଳନ ହେଉଚି ।

ଏଇ ପ୍ରେମ ବେପାରରେ ଆଜିକାଲି ଛାପା ବେପାରୀଠୁ ମୋବାଇଲ୍ ବେପାରୀ ବେଶି ଲାଭବାନ୍ ହେଲେଣି । ଏବେ ବୁଢ଼ାବୁଢ଼ୀଙ୍କ ମୋବାଇଲକୁ ବି ଘଡ଼ି ଘଡ଼ି ମେସେଜ୍ ଆସୁଚି । ଆପଣଙ୍କ ପ୍ରେମିକ/ପ୍ରେମିକା ଆପଣଙ୍କୁ କେତେ ଭଲପାଆନ୍ତି, ଜାଣିବା ପାଇଁ ଲଭଜୋନ୍ ଏତିକିକୁ ଡାଏଲ କରନ୍ତୁ ।

କହିଲେ ଆଜ୍ଞା; ପ୍ରେମ କ'ଣ ଗୋଟାଏ ପଦାର୍ଥ ? ତାକୁ କ'ଣ ମାପି ହୁଏ ? ହଁ, ଆଜ୍ଞା ! ଆଜିକାଲି ଟୋକେଇରେ ଆଳୁ ବାଇଗଣ ପୂରେଇ ବଜାର ବୁଲେଇ ବିକିଲା ଭଳି ଝିଅଟା ଗାଉଚି- ମୁଁ କାହାକୁ ଦେବି ମନ ? ପୁଅଟା ଅତି ସହଜରେ କହି ଦେଉଚି- 'ମତେ ଟିକିଏ ଭଲ ପାଅ ।' ଏଇଟା ତ ମୁଣ୍ଡବିନ୍ଧା, ଗୋଡ଼ଘୋଳା ନୁହଁ ଯେ ସିଧାସଳଖ କହିବ- ମୋ ମୁଣ୍ଡ ଟିକେ ଚିପି ଦେ, ମୋ ଗୋଡ଼ ଟିକେ ଘଷି ଦେ । ଏଇଟା ହେଉଚି ହୃଦୟର କଥା । ଅନ୍ତତଃ ଆମ ଦେଶରେ ଏମିତିଆ ହୃଦୟ ଦିଆନିଆ ହୁଏନାହିଁ ।

ଆମର ଏଇଠି ପ୍ରେମ ନିଆରା, ବିବାହ ନିଆରା । ପାଶ୍ଚାତ୍ୟ ଦେଶଭଳି ଆଜି ପ୍ରେମକରି କାଲି ଭୁଲିଯିବା ଆମେ ଶିଖିନାହୁଁ । ତଥାପି ଆମେ ଖଣ୍ଡିଆ ହଡ଼ା ମାତିଲା ଭଳିଆ ମାତି ଯାଇଚୁ । ପ୍ରେମ ଦିବସ, ବିବାହବାର୍ଷିକୀ ପାଳନ କରୁଚୁ । ଆରେ ଭାଇ, ସିଆଡ଼ିକା ଲୋକ ସିନା ସ୍ତ୍ରୀ ସହିତ ଦୁଇବର୍ଷ କାଟିଲା ପରେ ଭାବନ୍ତି ଯାହା ହଉ ଗୋଟାଏ ସ୍ତ୍ରୀ ସହିତ ମୁଁ ଦି ବର୍ଷ କାଟିଦେଲି । ଆଉ ସେଇ ଖୁସିରେ ଦ୍ୱିତୀୟ ବିବାହବାର୍ଷିକୀ ପାଳନ କରନ୍ତି । ଆମର ଏଇଠି ଥରେ ଯାହାକୁ ବାହା ହୁଅନ୍ତି ତାକୁ ସାତ ଜନ୍ମର ସାଥୀ କରିନିଅନ୍ତି । ଗୋଟାଏ ଜନ୍ମ ତ ନିଶ୍ଚୟ ସାଙ୍ଗରେ ରହନ୍ତି । ଏଥିରେ ବିବାହବାର୍ଷିକୀ ପାଳିବା କାହିଁକି ?

ସେହିଭଳି ପ୍ରେମଦିବସ ଆଜ୍ଞା ! ଆମ ପିଲା ଏ ଦିବସକୁ ଯେମିତି ପାଳୁଛନ୍ତି, ଡର ଲାଗୁଛି । କେବେ ୟାକୁ ଜାତୀୟଦିବସ କରିଦେବେ । ତା'ପରେ ସବୁ ହିସାବ ଗଡ଼ବଡ଼ ହୋଇଯିବ । ପ୍ରେମ ଦିବସରୁ ଶିଶୁ ଦିବସ (ଫେବୃୟାରୀ ୧୪ରୁ ନଭେମ୍ବର ୧୪) ନଅ ମାସିଆ ହିସାବ କିତାବ ଚାଲିବ। ଆମ ସଂସ୍କୃତିର ଗତି କୁଆଡ଼ିକି ଭାବି ପାରୁଚନ୍ତି ?

ଆସନ୍ତୁ, ଏଇ ପଶ୍ଚିମ ମୁହାଁ ପିଲାଙ୍କୁ ଆମ ସଂସ୍କୃତିର କଥା ବୁଝେଇଦେବା । ବୁଝି ନପାରିଲେ, ବୁଡ଼ି ଯାଉଥିବା ସୂର୍ଯ୍ୟକୁ ଦେଖେଇ କହିବା- ବାବୁରେ ! ଦେଖ, ପଶ୍ଚିମକୁ ଯାଇ ସୂର୍ଯ୍ୟକେମିତି ବୁଡ଼ିଯାଉଛି । ସେମିତି, ପଶ୍ଚିମ ମୁହାଁ ହେଲେ ଆମ ସଂସ୍କୃତି ବି ବୁଡ଼ିଯିବ ।



# ବିଶ୍ୱ ଦେଖ ମିଛମୟ

**ଜୀ**ବନ ସାଙ୍ଗରେ ମୋ ପୁଅ ଖେଳେ । ଜୀବନ ସାଙ୍ଗରେ ବୁଲେ । ଜୀବନ ସାଙ୍ଗରେ ସ୍କୁଲକୁ ଯାଏ ଆସେ । ତା'ର ସବୁ କଥା ଜୀବନ ଆଗରେ ଖୋଲିକି କହେ । ଗଣିତରେ ଯୋଉଦିନ ୩୦ ନମ୍ବର ପାଇଲା, ଜୀବନ ପଚାରିଲା-'ସୁବୁନ୍ ! ତୁ ଘରେ ମଉସାଙ୍କୁ କ'ଣ କହିବୁ?' ପୁଅ ନିର୍ବିକାର ଭାବରେ କହିଲା - ଅଶୀ ।

ଜୀବନ ଆଶ୍ଚର୍ଯ୍ୟ ହୋଇ ପଚାରିଲା - 'ତୁ ଏତେବଡ଼ ମିଛ ମଉସାଙ୍କୁ କେମିତି କହିପାରିବୁ ? ତୁ ଜାଣିଚୁ ମିଛ କହିବା ମହାପାପ !' ପୁଅ ଜୋରରେ ହସିଲା - 'ତୁ ବୋକାଟା । ଛୋଟ ପିଲାଙ୍କୁ ତ ପାପ ଲାଗେନି । ଆଉ ବଡ଼ମାନେ ତ ସବୁବେଳେ ମିଛ ହିଁ କହନ୍ତି । ମୁଁ ଛୋଟ ପିଲାଟାଏ ମାଡ଼ ଭୟରେ  ନମ୍ବର ବଢ଼ାଇଦେଲେ ଏମିତି କି ଦୋଷଟାଏ ହୋଇଗଲା ? ଶିକ୍ଷାମନ୍ତ୍ରୀଙ୍କ ଭଳି ବଡ଼ ବଡ଼ ଲୋକଙ୍କ ନାଁରେ ପରା ଏମିତିଆ ନମ୍ବର ବଢ଼ା ଅଭିଯୋଗ ଅଛି । ବାପା ବୋଉଙ୍କଠାରୁ ଆରମ୍ଭ କରି କେତେ ବଡ଼ ଲୋକଙ୍କ ଉଦାହରଣ ଦେବି ?

କାଲି ଘରେ ବାପା ଶୋଇଥିଲେ । ଜଣେ ଆସି କଲିଂବେଲ୍ ମାଇଲା । ବାପା ମତେ କହିଲେ - ଯା' କହିଦେବୁ, ବାପା ଘରେ ନାହାନ୍ତି ! ମୁଁ ଯାଇ କହିଦେଲି, ବାପା କହୁଚନ୍ତି, ସେ ଘରେ ନାହାନ୍ତି ! ପରେ ବାପା ମତେ ବହୁତ ରାଗିଲେ, 'ବୋକା' କହି ଗାଳିଦେଲେ । ଏମିତି ଅନେକଥର ସତ କହି ମୁଁ 'ବୋକା' ହେଇଚି ।

ମୋ ବୋଉ ବି ମିଛ କହେ । ଆମ ସ୍କୁଲର ଯୋଉଦିନ ଫଙ୍କସନ୍ ଥିଲା ସେଠିକି ବାହାରିଲାବେଳେ ବାପା କହିଲେ - ଟିକେ ଶୀଘ୍ର ବାହାର, ଫଙ୍କସନ୍‌ରୁ

ଫେରିଲେ ମୋର ପୁଣି ଭୁବନେଶ୍ୱର ଯିବାର ଅଛି । ବୋଉ କହିଲା ଗୋଟେ ମିନିଟ୍‌ରେ ବାହାରୁଚି । ବୋଉ ସବୁବେଳେ ଗୋଟେ ମିନିଟ୍ ଗୋଟେ ମିନିଟ୍ କହେ, କେବେ ଘଣ୍ଟାଟିଏ ପୂର୍ବରୁ ବାହାରେନା । ସେ କ'ଣ କରିବ ! ବାପାଙ୍କ ଭୟରେ ମିଛ କହିବାକୁ ବାଧ୍ୟ ହୁଏ ।

ଖାଲି ବାପା ବୋଉ ନୁହନ୍ତି, ଏ ଦେଶର ଜ୍ଞାନୀଗୁଣୀ ଲୋକ ବି ଖାଲି ନୀତି ଆଦର୍ଶର ଭାଷଣ ଶୁଣାନ୍ତି ସିନା; ଭାଷଣରେ ସୁଦ୍ଧୁ ମିଛକଥା କହନ୍ତି । ଆମ ସ୍କୁଲ ଫଙ୍କସନ୍‌ରେ ଅତିଥିଙ୍କର ଘଣ୍ଟା ଘଣ୍ଟା ଭାଷଣ ଶୁଣି ମୁଁ ବୋର୍ ହେଇଗଲି । ବାପାଙ୍କୁ କହିଲି - ଚାଲ ଘରକୁ ଯିବା । ବାପା କହିଲେ - ରହ ଗୋଟେ ମିନିଟ୍ । ଭାଷଣ ଘଣ୍ଟେ ସରିଲା ପରେ ଅତିଥି କହିଲେ - ଆଉ ଗୋଟେ ଛୋଟ କଥା କହି ମୁଁ ମୋର ଭାଷଣ ସାରିବି । 'ଗୋଟାଏ କଥା' 'ଗୋଟାଏ କଥା' କହି କହି ୫୦ଟା ବଡ଼ବଡ଼ କଥା କହିଲେ, ହେଲେ ଭାଷଣ ସଇଲା ନାହିଁ । ସମସ୍ତେ ବୋର ହେଇଗଲେ, ଆମେ ଉଠିକି ପଳାଇଆସିଲୁ ।

ଥଣ୍ଡାରେ ବସି ମତେ ସେଦିନ ଜର ହେଇଗଲା । ପରଦିନ ଡାକ୍ତରଖାନା ଗଲୁ । ସେଇଠି ନର୍ସ ଦିଦି ମତେ ଇଞ୍ଜେକ୍‌ସନ ଦେଲେ । ଇଞ୍ଜେକ୍‌ସନ ଦେବା ଆଗରୁ କହିଲେ - ହେଇ ଦେଖ, ସେ ଗଛ ଉପରେ କେଡ଼େ ବଡ଼ ମାଙ୍କଡ଼ଟା ବସିଚି । ମୁଁ ବୁଲି ଦେଖେ ତ ମାଙ୍କଡ଼ ନାଇଁ, ଖାଲି ମିଛ । ଏତିକି ବେଳକୁ ଦିଦି ମୋ ହାତରେ ତୁଳା ସ୍ପିରିଟ୍ ଘଷିଲେ । ମୁଁ ପାଟିକଲି, ଦିଦି କହିଲେ ଜମାରୁ କାଟିବ ନାଇଁ, ହେଲେ ଫୋଡ଼ିଦେଲେ ଯେ ବହୁତ ଜୋରରେ କାଟିଲା । ସମସ୍ତେ ମିଛୁଆ ।

ଡାକ୍ତର ସାର୍ ସେଇଠି ବାହାରେ ବୁଲି କ୍ୟାଣ୍ଟିନ୍ ପାଖରେ ଚାହା ପିଉଥିଲେ । ତାଙ୍କ ମୋବାଇଲକୁ ଫୋନ୍ ଆସିଲା । ସେ କହିଲେ ମୁଁ ଏବେ ଓ.ଟି ଭିତରେ ଅଛି, ଟିକେ ପରେ ଫୋନ୍ କରନ୍ତୁ । ମୋବାଇଲରେ ତ 'ମିଟିଂରେ ଅଛି, ଓ.ଟି.ରେ ଅଛି' ଏମିତିଆ ମିଛ ବଡ଼ମାନେ କହନ୍ତି ।

ଆରେ ! ଆମେତ ପିଲାମାନେ ମାତ୍ର ଭୟରେ ମିଛ କହୁଛୁ, ବଡ଼ମାନେ ଦର୍କାର ନଥାଇ ମିଛ କହନ୍ତି । ବୋଉ କହୁଥିଲା ଆମ ଘର ପାଖ ଦାସ ଆଣ୍ଟିଙ୍କ

ଗାଁରେ ଗୁଣ୍ଠେ ବି ଜମି ନାଇଁ । ସେ ଫୁଟାଣି ମାରି କହନ୍ତି- ଗାଁରେ ଆମର ଚାରିବାଟି ଜମି ଅଛି । ଖବରକାଗଜରେ ମୁଁ ପଢ଼ିଚି ଆମ ନେତା ମନ୍ତ୍ରୀଙ୍କର କଟକରେ କୋଠା, ଭୁବନେଶ୍ୱରରେ କୋଠା-ଅଚଳାଚଳ ସମ୍ପତ୍ତି । ସେମାନେ କହନ୍ତି- ଘର ଦି'ବଖରା ଛଡ଼ା ସେମାନଙ୍କର ଆଉ କିଛି ନାଇଁ ।

ଯାହାର କିଛି ନାଇଁ, ସେ ବଢ଼େଇକି କହେ, ଯାହାର ବଢ଼ିକି ଅଛି ସେ କମେଇକି କହେ । ମୋଟାମୋଟି ଏଠି ସମସ୍ତେ ମିଛ ହିଁ କହନ୍ତିରେ ଜୀବନ ! ସବୁଆଡ଼େ ମିଛ ଆଉ ମିଛ । ଗଙ୍ଗାଧର ମେହେର ଥିଲେ ଏବେ ଲେଖନ୍ତେ-

ବିଶ୍ୱ ଦେଖ ମିଛମୟରେ ଜୀବନ

ବିଶ୍ୱ ଦେଖ ମିଛମୟ



# ସବୁ ଦୋଷ ବଡ଼ର

ଆଗରେ ଗୋଟାଏ 'ଏଲ୍' ପଛରେ ବି'ଟା 'ଏଲ୍' ମାରି ମୁଁ ଯେତେବେଳେ ରିଂ ରୋଡ଼ରେ କାର୍ ଚଲାଇବା ଶିଖୁଥିଲି କେତେ ଯେ ଲୋକଙ୍କଠୁ ଗାଳି ଶୁଣିଛି ତା'ର ଠିକଣା ନାହିଁ । କିଏ କହିଛି - ଯାଉନ, କିଲ୍ଲା ପଡ଼ିଆରେ ଗାଡ଼ି ଶିଖିବ ? କିଏ କହିଛି - ଓ ଭାଇ ! ରାସ୍ତାରେ ଗାଡ଼ିଶିଖି ଲୋକଙ୍କୁ ମାରିବ ନା କ'ଣ ? ସତେ ଯେମିତି ଏମାନେ ଘର ଭିତରେ ଗାଡ଼ି ଶିଖି ସିଧା ସହର ମଝିକୁ ଆସି ଗାଡ଼ି ଚଳଉଛନ୍ତି । ଯାହାହେଉ, ଆଜି ମୋ ଗାଡ଼ିରୁ 'ଏଲ୍' କାଢ଼ି ଦିଆହେଇଛି । ସହର ମଝିରେ ଗାଡ଼ି ଚଳେଇବାର ଲାଇସେନ୍ସ ମିଳି ଯାଇଛି । ସାହାସର ସହିତ ସିଧା ଭୁବନେଶ୍ୱରର ବାଣୀ ବିହାର ଟ୍ରାଫିକ୍ ଛକରେ ମୁଁ ପହଞ୍ଚି ଯାଇଚି । ଟ୍ରାଫିକ୍ ଜାମ୍, ସତୁରି ସେକେଣ୍ଡ ପରେ ଗାଡ଼ି ଚାଲିବ । ଷ୍ଟାର୍ଟ ବନ୍ଦ କରି ଅପେକ୍ଷା କଲି । ଦଶ ସେକେଣ୍ଡ ବାକିଥିବାବେଳେ ଗାଡ଼ି ଷ୍ଟାର୍ଟ କଲି । ଶୂନକୁ ଆସିବା ପାଇଁ ସାତସେକେଣ୍ଡ ବାକି ଅଛି ପଛରୁ କିଛି ଲୋକ ହାଉଳି ଖାଇଲେ - ଓ ଭାଇ, ଗାଡ଼ି ଚଲା । ଛାନିଆରେ କ୍ଲଚ୍ ଛାଡ଼ିଦେଲି, ଷ୍ଟାର୍ଟ ବନ୍ଦ ହୋଇଗଲା । ତା'ପରେ ପଁ, ପାଁ... କିର୍ କିର୍ ଶବ୍ଦରେ ମୋ କାନମୁଣ୍ଡା ଘାଇଁ ଘାଇଁ ହେଇଗଲା । ମୁଣ୍ଡ ଗୋଳମାଳ ହେଇଗଲା । ଇଚ୍ଛା ହେଉଥିଲା ପଛ ଗାଡ଼ିବାଲାକୁ କହନ୍ତି - 'ହଇଓ ଭାଇ ! ହର୍ଣ୍ଣ ମାରିବା ତ ଅତି ସହଜ କଥାଟିଏ, ତମେ ଆସି ମୋ ଗାଡ଼ିକି ଷ୍ଟାଟ୍ କରିଦିଅ, ମୁଁ ଯାଇ ତମ ଗାଡ଼ିର ହର୍ଣ୍ଣ ମାରିଦେଉଚି ।' ହେଲେ ସେ ପଁ... ପାଁ... ଭଁ... ଭାଁ.. କଳିକିଳା ନାଦରେ ମୋ କଥା ଶୁଣିବ କିଏ? ବଡ଼ କଷ୍ଟରେ ମନକୁ ସ୍ଥିରକରି ଗାଡ଼ି ଗଡ଼େଇଲି । ଥରେ ଛକକୁ ପଶିଗଲାପରେ ଗାଡ଼ିର ଗତି ବି ଧିମା ହୋଇଯାଉଥାଏ । ଏଇ ସୁଯୋଗରେ ବି' ପାଖରୁ ଯାହାର ଯେମିତି ଇଚ୍ଛା ହେଉଥାଏ ମୋ ଗାଡ଼ି ସହ

ଘଷି ହେଇ ଆଗକୁ ଚାଲିଯାଉଥାନ୍ତି । ମୁଁ ବୁଝିପାରୁ ନଥାଏ ଏମାନେ ଶୀଘ୍ର ଯିବାପାଇଁ ଏତେ ଉଚ୍ଛନ୍ନ କାହିଁକି ? ସକାଳୁ ବୋଧେ ଠିକ୍ ଭାବେ ନିତ୍ୟକର୍ମ ସାରିନାହାନ୍ତି । ସେଇଥିପାଇଁ ତରତର ।

ଏଥର ଗାଡ଼ି ବୁଲାଇଲି ବାଣୀବିହାର ଆଡ଼କୁ । ଆଗରୁ ଯୁବକଟାଏ ମୋବାଇଲକୁ କାନ ଓ କାନ୍ଧ ସନ୍ଧିରେ ଜାକି ମଟରସାଇକଲ ଚଳାଇ ଧୀରେ ଧୀରେ ଆସୁଚି । ମୋବାଇଲରେ କଥାବାର୍ତ୍ତା ଭିତରେ ତା'ର ହଠାତ୍ କ'ଣ ଉତ୍ସାହ ଆସିଲା କେଜାଣି ଗତି ବଢ଼ିବା ସହ ମଟର ସାଇକଲଟା ଏପାଖ ସେପାଖ ହେଇଗଲା । ମୋ କାର୍‌ଟା ଠକ୍ ହେଇ ତା ମଡ଼ଗାର୍ଡରେ ବାଜିଲା । ମୁଁ ତତ୍‌କ୍ଷଣାତ୍ ଷ୍ଟିଅରିଂକୁ ଟିକେ ବୁଲାଇ ସ୍ପିଡ଼୍‌ରେ ବାଣୀବିହାର ଭିତରକୁ ପଶିଗଲି ।

ଆପଣମାନେ ଭାବିପାରନ୍ତି - ଧକ୍କାଟା ହେବାପରେ ମୋର ସେଇଠି ଅଟକିବା ଉଚିତ ହେଇଥାନ୍ତା । କ୍ଷମା କରିବେ ଆଜ୍ଞା । ମୁଁ ଜାଣିଚି ଏ ଦେଶର ଲୋକ ଗୋଟାଏ ନିୟମକୁ ଭଲଭାବେ ଘୋଷି ଦେଇଚନ୍ତି । ଧକ୍କା ହେଲେ ସବୁ ଦୋଷ ବଡ଼ ଗାଡ଼ିର । ଚାଲନ୍ତା ଲୋକ ସାଙ୍ଗେ ଧକ୍କା ହେଲେ ସାଇକଲବାଲାର, ସାଇକଲ ସାଙ୍ଗେ ଧକ୍କା ହେଲେ ମଟରସାଇକଲ ବାଲାର, ମଟରସାଇକଲ ସାଙ୍ଗେ ଧକ୍କା ହେଲେ କାର୍ ବାଲାର, କାର୍ ସଙ୍ଗେ ଧକ୍କା ହେଲେ ଟ୍ରକ୍‌ର ଦୋଷ । ମୁଁ ସେଇଠି ଯଦି ଅଟକିଥାନ୍ତି, କିଛି ନବୁଝି ନସୁଝି ଯାହାର ଯେତେ ଇଚ୍ଛା ସେତେ ହାତସୁଖ କରିଦେଇଥା'ନ୍ତେ । ଗୋଟାଏ ତଳେ ପଡ଼ିନଥାନ୍ତା ।

ଏଇ ସବୁ କାରଣରୁ ବୋଧେ ଯୋଉଠି ସବୁ ଧକ୍କା ହେଇଚି, ଦୋଷ ଥାଉ କି ନଥାଉ ବଡ଼ ଗାଡ଼ିର ଡ୍ରାଇଭର ଫେରାର ହେଇଯାଇଚି । ସେଇଥିପାଇଁ ଆମ ସାହିରେ ଥିବା ଡ୍ରାଇଭିଂ ଇନ୍‌ଷ୍ଟିଚ୍ୟୁଟ୍‌ର ବସନ୍ତଭାଇଙ୍କୁ ମୁଁ କହେ, 'ଭାଇ ! ଆପଣ ଡ୍ରାଇଭିଂ ଶିଖାଇବା ସାଙ୍ଗେ ସାଙ୍ଗେ ଡ୍ରାଇଭରକୁ ଜୋର୍‌ରେ ଦୌଡ଼ିବା ବି ଶିଖାନ୍ତୁ । ନହେଲେ ବିନାଦୋଷରେ ବି କେତେବେଳେ ବିଧା ଚାପୁଡ଼ାରେ କାହାର ପୈତୃକ ପ୍ରାଣଟା ଚାଲିଯାଇପାରେ ।'



# ଲେଖକ ହେବାର ଫର୍ମୁଲା

ପ୍ରାତଃଭ୍ରମଣରେ ବାହାରିଥିଲି ଦାସବାବୁଙ୍କ ସାଙ୍ଗରେ । ବାଟରେ ଆଉ କିଛି ବନ୍ଧୁ ଦେଖାହେଲେ । 'ଅଜ୍ଞାନ ବିଚାର'ର ଜୋରସୋର ଚର୍ଚ୍ଚା ଚାଲିଲା । ଚର୍ଚ୍ଚା ସମୟରେ ପୂରା ଗୁମସୁମ ଥିଲେ ଦାସବାବୁ । ଫେରିଲାବେଳେ ଉଦାସ କଣ୍ଠରେ କହିଲେ- 'ଭାଇ ! ଜୀବନରେ ମୁଁ ବହୁତ ପଇସା କମେଇଲି; ହେଲେ ନାଁ କମେଇ ପାରିଲିନି । ଖବରକାଗଜରେ ଲେଖା ବାହାର କରିବାର ଫର୍ମୁଲାଟା ଆମକୁ ବି ଟିକେ ବତେଇ ଦିଅନ୍ତେନି ? 'ମୁଁ କହିଲି - 'ଭାଇ ! ପ୍ରଥମ ଫର୍ମୁଲାଟି ହେଉଛି ଲେଖାଲେଖି, ପ୍ରଥମେ ଲେଖନ୍ତୁ ତା'ପରେ ଯାହା କିଛି ।'

ବନ୍ଧୁ ଆଉ ଫୁରସତ ଦେଲେ ନାହିଁ । ସଂଜବେଳେ ମୋ ଘରକୁ ଡାଏରୀଟାଏ ଧରି ପହଞ୍ଚିଗଲେ । ମୋ ଟେବୁଲ ଉପରେ ଥୋଇଦେଇ କହିଲେ, 'ଆଜି ଦିନସାରା ବସି ଏ ଡାଇରୀଟା ଫୁଲ କରି ଦେଇଚି । ଆପଣ ଟିକେ ଆଖି ବୁଲେଇ ଦିଅନ୍ତୁ ।' ପଢ଼ିବା ଆରମ୍ଭ କଲି ପ୍ରଥମ ପୃଷ୍ଠାର ପ୍ରଥମ କବିତା -

ଆହା କି ବଢ଼ିଆ ଜହ୍ନରାତି
ଉଡ଼ିଯାଉଥିଲେ ପଲେ ହାତୀ
ପତର ପଥର ଦୁଇ ଜାତି
ନଢ଼ିଆ ବଢ଼ିଆ ଗଲେ ମାତି
ଅଜାସାଙ୍ଗେ ମଜା କରେ ନାତି
ବାଘ ଛଡ଼ଉଚି ଦେହୁ କାତି ।

ଆଖି ବନ୍ଦ କରି ଦୁଇ ମିନିଟ୍ ବସି ପଡ଼ିଲି । ମିଛ ପ୍ରଶଂସା କଲେ ବି ଅଡୁଆ, ସତ କହିଲେ ଆହୁରି ଅଡୁଆ । ଚଳେଇ ଦେବା ଭଳି କହିଲି - 'ବାଃ ଆପଣଙ୍କ କସରତ୍‌କୁ ମାନିବାକୁ ପଡ଼ିବ । କବିତାର ଅର୍ଥ କିଛି ନଥିଲେ ବି ଆପଣ ଯେମିତି ଯତିପାତ କରଉଚନ୍ତି ତାହା ଏ ରାଜ୍ୟରେ ବିରଳ । ପୁଣି ଟିକେ ଅଟକି ଯାଇ କହିଲି - 'ଆଜିକାଲି ଏଭଳି କବିତା କିନ୍ତୁ ଚଳୁ ନାହିଁ ।'

ନାଁ କମେଇବା ନିଶାରେ ବନ୍ଧୁ ତ ନଛୋଡ଼ ବନ୍ଧା ! କହିଲେ - 'ଆଗକୁ ଦେଖନ୍ତୁ । ଆଧୁନିକ ଛନ୍ଦରେ ବି କବିତା ଅଛି' । ଗୋଟିଏ ଭାତ ଚିପୁଡ଼ିଲା ପରେ ହାଣ୍ଡିକ ଭାତର ଅବସ୍ଥା ଜାଣିଯାଇଥିଲି । ମିଛରେ କିଛି ପୃଷ୍ଠା ଓଲଟାଇ ଗଲି । କହିଲି - 'ଆପଣ କବିତା ଛାଡ଼ି ପ୍ରବନ୍ଧରେ ମନୋନିବେଶ କରୁନାହାନ୍ତି ? ସହିଦ୍ ଦିବସରେ ସହିଦ୍‌ମାନଙ୍କ ଜୀବନୀରୁ କିଛି ସଂଗ୍ରହ କରି 'ସହିଦ୍ ସ୍ମରଣେ' ବା ଶିଶୁ ଦିବସରେ ଶିଶୁ ସମସ୍ୟା ସମ୍ପର୍କିତ କିଛି ବିଷୟକୁ ନେଇ 'ଶିଶୁ ହସିଲେ ଦୁନିଆ ହସେ' ଭଳି କିଛି ଲେଖା ଲେଖୁନାହାନ୍ତି ?' ବନ୍ଧୁ କହିଲେ, 'ସେଇଟା ଆହୁରି ସହଜ କାମ, ଟିକେ କସରତ୍ କରି ଦି' ଚାରିଟା ପ୍ରବନ୍ଧ ଘାଣ୍ଟି ଏକାଠି କରିଦେଲେ ନୂଆ ପ୍ରବନ୍ଧ ହୋଇଯିବ । ଠିକ୍ ଅଛି, ଆସନ୍ତା ଭାଲେଣ୍ଟାଇନ୍ ଦିବସ ପାଇଁ ମୁଁ 'ପ୍ରେମ ଦିବସ' ଶୀର୍ଷକ ପ୍ରବନ୍ଧଟେ ଆପଣଙ୍କୁ ଦେଇଦେବି । ଖବରକାଗଜରେ ତାକୁ ଛପେଇବା ଦାୟିତ୍ୱ ଆପଣଙ୍କର ।'

ମୁଁ ଦେଖିଲି- କ୍ରମଶଃ ମୁଁ ମହର୍ଗରୁ ଯାଇ କାନ୍ତାରରେ ପଡୁଛି । ମୁକୁଳିବାର ଉପାୟଟେ ଖୋଜି ପାଇଗଲି । କହିଲି- 'ନାଇଁ, ସେମିତି ତରତର ହୁଅନ୍ତୁ ନାଇଁ । ଆଜିକାଲି ତ କେତେ ଖବର କାଗଜ । ଆପଣଙ୍କର ବି କିଛି ଖବରକାଗଜବାଲା ମୁହଁ ଚିହ୍ନା ନିଶ୍ଚିତ ଥିବେ । ଆପଣ ଟିକେ ସେମାନଙ୍କ ଉପରେ ନିଘା ରଖନ୍ତୁ । ସଂଜବେଳେ ସେମାନେ ଯୋଉ ପୁରୁଣା ବସ୍‌ଷ୍ଟାଣ୍ଡ୍‌ରେ ଖଟି କରୁଚନ୍ତି, ଆପଣ ସେଇଠି ପହଞ୍ଚନ୍ତୁ । ସେମାନେ ଚା' ପିଇଲାବେଳେ ଆପଣ ବି ଚା' ପିଅନ୍ତୁ । ସେମାନେ ପଇସା ଦେବା ଆଗରୁ ଆପଣ ପଇସାଟା ବଢ଼େଇ ଦିଅନ୍ତୁ । ତା'ପରେ ତାଙ୍କୁ ସିଗାରେଟ୍, ପାନ, ଗୁଟ୍‌କା ଆଦି ଯାଚନ୍ତୁ । କିଛି ଦିନ ପରେ ସେମାନଙ୍କ

ସହ ଆପଣଙ୍କର ଜମିଯିବ । ଦିନେ ମଉକା ଦେଖି ଖବରକାଗଜବାଲାକୁ ପ୍ରବନ୍ଧଟାଏ ବଢ଼େଇ ଦେଇ କହିବେ - ଆଜ୍ଞା ! ଏଇ ଲେଖାକୁ ଟିକେ ବାଗେଇ ଦେଇ ଆପଣଙ୍କ କାଗଜରେ ଛାପି ଦିଅନ୍ତେ ନାହିଁ ? ଚାହା, ସିଗାରେଟ୍, ପାନର ବୋଝରେ ନଇଁ ପଡ଼ିଥିବା ବନ୍ଧୁ ଏଇ ଛୋଟ ଅନୁରୋଧଟିକୁ କ'ଣ ଏଡ଼େଇଦେଇ ପାରିବେ ? ଲେଖା ନିଶ୍ଚୟ ଛପା ହେବ । ତା'ପରେ ଦେଖିବେ ଆପଣ ବି ନାଁକରା ଲେଖକ ହେଇଯିବେ ।'

ଦାସବାବୁ ମୁଣ୍ଡ କୁଣ୍ଡେଇ କୁଣ୍ଡେଇ କହିଲେ - 'ଗୋଟିଏ ଲେଖାରେ କ'ଣ ଜଣେ ନାଁକରା ଲେଖକ ହେଇଯିବ ?' ମୁଁ କହିଲି - 'ଧୈର୍ଯ୍ୟ ଧରନ୍ତୁ, ଆହୁରି ଫର୍ମୁଲା ଅଛି - ପାଠକୀୟ ମତାମତରେ ହିଁ ଖବରକାଗଜରେ ଲେଖା ଚାଲେ । ସେ ମତାମତଗୁଡ଼ା ଆପଣଙ୍କୁ ଯୋଗାଡ଼ କରିବାକୁ ପଡ଼ିବ ।' ବନ୍ଧୁ ଖୁସି ହେଇଗଲେ । ମୋର ସବୁ ସାଙ୍ଗସାଥୀଙ୍କୁ କହିଦେବି, ସେମାନେ ମୋ ଲେଖାକୁ ପ୍ରଶଂସା କରି ଖବରକାଗଜକୁ ମତାମତମାନ ପଠେଇବେ ।' ମୁଁ କହିଲି-'ନା, ସେ ଭୁଲ କରନ୍ତୁ ନାହିଁ । କେହି ଚିଠି ଲେଖିବେନାହିଁ ବରଂ ଆପଣଙ୍କ ପଛରେ ଛିଗୁଲେଇ ହେବେ । ଆପଣ ନିଜେ କିଛି ପୋଷ୍ଟକାର୍ଡ଼ କିଣି ଭିନ୍ନ ଭିନ୍ନ ଠିକଣା, ଭିନ୍ନ ହସ୍ତାକ୍ଷରରେ ଭାଉଜ, ପିଲା, ଚାକରବାକରଙ୍କୁ ଲଗେଇ ମତାମତ ପଠାନ୍ତୁ ।

●

# ବାପାଙ୍କ ବାପାଙ୍କ ବାପାଙ୍କ ବାପା

'ଆମ ବାପାଙ୍କ ବାପାଙ୍କ ବାପାଙ୍କ ବାପା ଥିଲେ ଜଣେ ମାଙ୍କଡ଼ !'- ଯାକୁ କୁହାଯାଏ ବିବର୍ତ୍ତନବାଦ । ଏ ବିବର୍ତ୍ତନବାଦ ଉପରେ ବହୁ ଲୋକଙ୍କର ବିଶ୍ୱାସ ରହିଛି, କିଛି ଲୋକଙ୍କର ବିଶ୍ୱାସ ନାହିଁ । ଆମ ବାପାଙ୍କ ବାପାଙ୍କ ବାପାଙ୍କ ବାପା ଥିଲେ ଘୃତ, କୌଶିକ, କାଶ୍ୟପ କିମ୍ବା ଭରଦ୍ୱାଜ ବୋଲି କିଛି ଲୋକ କହିଥାନ୍ତି । ଯା ଭିତରେ ଆମେ କୋଉ କଥାଟାକୁ ମାନିନେବା ?

ଗୋଟାଏ ଲୋକର ଆଚାର ବ୍ୟବହାରରୁ ତା'ର ପୂର୍ବଜଙ୍କୁ ଜାଣିହୁଏ କିମ୍ବା ସନ୍ଦେହ କରାଯାଏ । ବେଳେବେଳେ ମୂର୍ଖ ପିଲାଟାକୁ କୁହାଯାଏ- ପୂର୍ବଜନ୍ମରେ ତୁ ଗଧ ଥିଲୁ ବୋଧେ । ଏଇ ପୂର୍ବଜନ୍ମକୁ ନେଇ ବହୁ ଗବେଷଣା ସରିଯାଇଛି । ନେହେରୁ, ଇନ୍ଦିରା, ବୁଶ୍‌ଙ୍କ ଭଳି ନେତାଙ୍କ ପୂର୍ବଜନ୍ମ କଥା ଜାଣି ପାରୁଥିବା ଜଣେ ବ୍ୟକ୍ତି କିଛିଦିନ ଆଗରୁ ବେଶ୍ ଚର୍ଚ୍ଚାରେ ଥିଲେ । ମୁଁ ମଧ୍ୟ ଏଭଳି ଚର୍ଚ୍ଚାରେ ରହିବା ପାଇଁ ପୂର୍ବଜନ୍ମ ଉପରେ କିଛିଦିନ ଗବେଷଣା ଆରମ୍ଭ କରିଥିଲି । ମାଟି ତାଡୁଥିବା ଷଣ୍ଢକୁ ଦେଖି କହିଦେଉଥିଲି - ଯେ ପୂର୍ବଜନ୍ମରେ ମ୍ୟୁନିସିପାଲିଟି ଚାକିରିଆ ଥିଲା, ଘରଦ୍ୱାର ଭାଙ୍ଗୁଥିଲା । ଗାଡ଼ି ପଛରେ ଗୋଡ଼ାଉଥିବା ପଶୁଙ୍କୁ ଦେଖି ଭାବୁଥିଲି- ଏମାନେ ଟ୍ରାଫିକ୍ ପୁଲିସ୍ ଥିଲେ, ଗାଡ଼ିକୁ ଗୋଡ଼େଇ ଗୋଡ଼େଇ ଧରୁଥିଲେ । ଏଭଳି ଅନେକ ଗବେଷଣା ସାରିଦେଇଚି ।

ଛାଡ଼ନ୍ତୁ, ଏବେ ମୂଳ ପ୍ରସଙ୍ଗକୁ ଆସିବା । ଆମ ପୂର୍ବ ପୁରୁଷମାନେ ମାଙ୍କଡ଼ ଥିଲେ ନା ଋଷି ଥିଲେ ? ଯାକୁ ନେଇ ମଧ୍ୟ ମୁଁ ବହୁ ତର୍ଜମା କରିଚି । ଆମ ସମାଜ ଭିତରେ ଖୋଜିଚି ଋଷିପ୍ରତିମ ଲୋକ କେତେ, ମାଙ୍କଡ଼ ପ୍ରତିମ ଲୋକ କେତେ ? କ୍ଷମା କରିବେ, ବେଶୀ ପରିମାଣରେ ମାଙ୍କଡ଼ ପ୍ରତିମ ଲୋକଙ୍କୁ ମୁଁ ଖୋଜି ପାଇଚି । ତେବେ ମାଙ୍କଡ଼ର କୋଉ ଗୁଣକୁ ମୁଁ ଆମ ମଣିଷମାନଙ୍କ ଭିତରେ ଦେଖିଚି ?

ଆଜ୍ଞା ! କୁହାଯାଏ- ମାଈ ମାଙ୍କଡ଼ଟା ଯଦି ଗୋଟେ ଅଣ୍ଡିରା ଛୁଆ ଜନ୍ମ କରିଦିଏ, ଗେଧ ମାଙ୍କଡ଼ଟା ତାକୁ ଗୋଡ଼େଇଗୋଡ଼େଇ ମାରିପକାଏ । ଆଜି ଆମ ସମାଜର ମଣିଷମାନଙ୍କଠେଇଁ ଆପଣ ଏଇ ଗୁଣଟା କ'ଣ ଦେଖିନାହାନ୍ତି ? ଅବଶ୍ୟ ଲିଙ୍ଗଭେଦରେ ମଣିଷମାନେ ମାଙ୍କଡ଼ଠୁ ସାମାନ୍ୟ ଅଲଗା । ସେ ଅଣ୍ଡିରା ଛୁଆକୁ ମାରୁଥିଲା, ଆମେ ମାଈ ଛୁଆକୁ ମାରୁଚୁ । ଏକଥାର ପ୍ରମାଣ ଦେବା ବୋଧେ ଆବଶ୍ୟକ ହେବ ନାହିଁ । ନୟାଗଡ଼ କୂଅରୁ ଜରି, କଟକ-ଭୁବନେଶ୍ୱରର ବହୁ ନର୍ସିଂହୋମ୍‌ରେ ଘଟୁଥିବା ଘଟଣା ଆପଣମାନେ ଜାଣନ୍ତି ।

ଆମ ସମାଜରେ ଏବେ ମଧ୍ୟ କେହି କାହାକୁ ଆଶୀର୍ବାଦ ଦେବାବେଳେ କହେ - ତୋର ପୁଅଟିଏ ହଉ । କେହି କାହାକୁ ଝିଅଟିଏ ହଉ ବୋଲି କହିବାର ଏ କାନ ଶୁଣି ନାହିଁ । ଏ ଦେଶର ରାଷ୍ଟ୍ରପତି, ଲୋକସଭାର ବାଚସ୍ପତିଙ୍କଠୁ ଆରମ୍ଭ କରି କଳ୍ପନା ପରିଡ଼ା, ପଦ୍ମିନୀ ରାଉତଙ୍କ ନାଁ କହି ଆମେ ମହିଳାଙ୍କୁ ଯେତେ ମହିୟସୀ କହିଲେ ମଧ୍ୟ ଆମ ସ୍ୱଭାବ ବଦଳିବ ନାହିଁ । ଧନ ପାଇଁ ଆମେ ଲକ୍ଷ୍ମୀଙ୍କୁ ପୂଜା କରୁଚୁ, ବିଦ୍ୟା ପାଇଁ ସରସ୍ୱତୀଙ୍କୁ, ଶକ୍ତି ପାଇଁ ଦୁର୍ଗାଙ୍କୁ । ମୁହଁରେ ଖାଲି ନାରୀଙ୍କୁ ମହିୟସୀ କହୁଚୁ, ଦେବୀଙ୍କୁ ଆରାଧନା କରୁଚୁ; କିନ୍ତୁ ଘରେ କନ୍ୟାଟିଏ ଆସିବାର କଥା ଶୁଣିଲେ ଛୁଆମରା ଡକ୍ତର ଖୋଜୁଚୁ ।

ଏଥର କହନ୍ତୁ ! ଆମ ବାପାଙ୍କ ବାପାଙ୍କ ବାପାଙ୍କ ବାପା ଥିଲେ ଜଣେ କ'ଣ ???



# ମୋବାଇଲର ମଜା

**ଘ**ରେ ଛୁଆଠୁ ବୁଢ଼ା ଯାଏ ସମସ୍ତଙ୍କ ହାତରେ ଆଜିକାଲି ମୋବାଇଲ । ପିଲାର ସ୍କୁଲ ଟ୍ୟୁସନ୍ ଉପରେ ନଜର ରଖିବା ପାଇଁ ମୋବାଇଲ, ଭିଡ଼ ଭିତରେ ନିଜର ଲୋକଙ୍କୁ ଖୋଜିବା ପାଇଁ ମୋବାଇଲ । ମୋବାଇଲର ପ୍ରଚଳନ ପରେ ଏବେ କଲିଂ ବେଲର ପ୍ରଚଳନ ଉଠିଗଲାଣି, ମିସ୍ କଲରେ ଏବେ ଘରର କବାଟ ଖୋଲାଯାଉଚି । କୁହାଯାଉଚି ଯେ ଜଣକୁ ଯଦି ଅଜଗରଟେ ଗିଳିପକାଏ, ନେଟ୍‌ୱାର୍କଥିଲେ, ତା' ପେଟ ଭିତରେ ରହି ଜଣେ ଦି'ଚାରି ଜଣଙ୍କୁ କଲ କରି ଉଦ୍ଧାର ପାଇଯାଇ ପାରିବ । ବିନା ମୋବାଇଲରେ ଯେ ଆମେ ଦିନେ ଚଳିପାରୁଥିଲେ, ଏକଥା ଭାବିଲା ବେଳକୁ ଆଜି କେମିତି କେମିତି ଲାଗୁଚି । ଜଣେ ତ କହୁଥିଲେ-ତ୍ରେତୟା ଯୁଗରେ ଯଦି ରାମ, ସୀତା କି ଲକ୍ଷ୍ମଣଙ୍କ ପାଖରେ ମୋବାଇଲ ଥାଆନ୍ତା ତେବେ ସୀତା ହରଣ ହୋଇନଥାନ୍ତା ।

ମୋବାଇଲରେ ସୁବିଧା ଯେତିକି ଅସୁବିଧା ତା'ଠୁ କମ୍ ନୁହେଁ । ଏସବୁ ଅସୁବିଧାକୁ ଊଣା ଅଧିକେ ସମସ୍ତେ ଅଙ୍ଗେ ନିଭେଇଥିବେ । ମୋବାଇଲ ଧରିବା ପରଠୁ ଛୁଟିରେ ଥାଇ ଅଫିସରଙ୍କଠୁ ମୁକ୍ତି ନାଇଁ । ଘର ଛାଡ଼ି ଅଫିସ ବଜାର ଗଲାବେଳେ ଯୋଉ କେଇ ଘଣ୍ଟା ମଣିଷ ସ୍ୱାଧୀନତାର ସ୍ୱାଦ ଚାଖୁଥିଲା, ଏ ମୋବାଇଲ ସେଇ ଟିକକ ବି ବନ୍ଦ କରିଦେଲା । ଏବେ ଘଡ଼ିଘଡ଼ି ଘରୁ ଫୋନ ଆସୁଚି- କୋଉଠି ଅଛ? କ'ଣ କରୁଚ ? ମିଛକୁହା ଯନ୍ତ୍ରରେ 'ଟ୍ରାଫିକ୍‌ଜାମ', 'ରସୁଲଗଡ଼ ଛକରେ' କହି ବେଳେବେଳେ ଫାଙ୍କିଦେଇ ହେଉଚି । ଶୁଣାଯାଉଚି ଆଗକୁ ସେଇ ରିହାତି ଟିକକ ବି ମିଳିବନି । ମୋବାଇଲରୁ କଲ୍ କରୁଥିବା ଲୋକ ଏଥର ଜାଣିପାରିବ ଆମେ କୋଉଠି ଅଛୁ ।

ମୋବାଇଲରେ ସବୁଠୁ ବଡ଼ ଅସୁବିଧାଟା ହେଲା ଖର୍ଚ୍ଚ । ଗପାଗପିରେ ଯଦି ଖର୍ଚ୍ଚ ହୁଅନ୍ତା ଯାଏଆସେ ନାଇଁ; କିନ୍ତୁ ମୋବାଇଲ କମ୍ପାନୀଗୁଡ଼ା ଧମକେଇକି

ପଇସା ଖର୍ଚ୍ଚ କରାଇ ଦେଉଚନ୍ତି । 'ୟାର ! ଏକ ଘଣ୍ଟା ହୋଗୟା । କବ୍ ସେ ଫୋନ୍ କର୍ ରହି ହୁଁ । ଫୋନ୍ ନେହି ଉଠାରହେ ହୋ ?' 'ହ୍ୟାଲୋ.... ହ୍ୟାଲୋ.... ହ୍ୟାଲୋ, ଏଃ ମତେ ସବୁବେଳେ ମିସ୍‌କଲ କାହିଁକି କରୁଚ ? ଜାଣିଚ ମୁଁ ପୁଲିସ୍ ଅଫିସରର ଝିଅ ।' ଏଭଳି କଲ୍ ଆପଣଙ୍କ ମୋବାଇଲକୁ ବି ଆସୁଥିବ । ବେଳା ଖରାପ ଥିଲେ ସ୍ତ୍ରୀଙ୍କ କାନରେ ଯଦି ଏହା ପଡ଼ିଗଲା ତେବେ ସଂସାର ଉଚ୍ଛନ୍ନ ହେଇଯିବ । ଆମ ସଂସାର ଉଜୁଡ଼େଇବା କ'ଣ ସେହି ଅଜ୍ଞାତ ମହିଳାଙ୍କ ଉଦ୍ଦେଶ୍ୟ ! ନୁହେଁ ଆଜ୍ଞା, ଏସବୁ ସ୍ୱର ହେଉଚି ମୋବାଇଲ କମ୍ପାନୀ ଦ୍ୱାରା ଆଗରୁ ରେକର୍ଡ କରାଯାଇଥିବା ସ୍ୱର । ଗ୍ରାହକଙ୍କୁ ଚିଡ଼େଇ ଖର୍ଚ୍ଚାନ୍ତ କରିବା ଏଭଳି କଲ୍‌ର ମୁଖ୍ୟ ଉଦ୍ଦେଶ୍ୟ । କିପରି ? ଧରନ୍ତୁ ଏପରି କଲ୍ ପାଇ ଆପଣ ବିରକ୍ତ ହୋଇପଡ଼ିଚନ୍ତି । ଅଧାରୁ କଲ୍‌ଟିକୁ କାଟିଦେବାକୁ ଯାଇ ଆପଣ ଲାଲ ବଟନ୍ ଜାଗାରେ ୧, ୨ କି ୩ ବଟନ୍ ଦାବି ଦେଇଛନ୍ତି । କଥା ସରିଲା - ମାସଯାକ ଆପଣଙ୍କର ଆଦୌ ଦରକାରରେ ଆସୁନଥିବା ଜୋକ୍ସ, କ୍ରିକେଟ୍ ବୁଲେଟିନ୍, ସାଏରୀ, କଲର ଟ୍ୟୁନ୍, ହ୍ୟାଲୋ ଟ୍ୟୁନ୍, ଲଭ୍ ମେସେଜ୍ ଆପଣଙ୍କ ମୋବାଇଲ୍‌ରେ ଖୁନ୍ଦି ହେଇଯିବ । ବାସ୍ ଏସବୁ ବାବଦ ମାସକୁ ତିରିଶ ଟଙ୍କା ଲେଖାଏଁ କଟିଯିବ । ୩୦୦ ଟଙ୍କାର ଭାଉଚର ପକାଇ ଗପିଥିବେ ମାତ୍ର ୧୦ ଟଙ୍କାରେ ବାକି ୨୭୦ ଟଙ୍କା କଟିଯାଇଥିବ ଏଇ ସେବା ସବସ୍କ୍ରାଇବ୍ କରିଥିବା ବିନିମୟରେ । ବାଲାନ୍ସ ଥିବ ମାତ୍ର ୧୦ ଟଙ୍କା କି ଆହୁରି କମ୍ । ଗ୍ରାହକଙ୍କୁ ଲୁଟିବା ପାଇଁ ଏସବୁ ଫିସାଦ କେବଳ ମୋବାଇଲ କମ୍ପାନୀଙ୍କର । କିଏ ଲୋକଙ୍କୁ ମତେଇକି ସିନା ଖର୍ଚ୍ଚାନ୍ତ କରାଏ; ଏମାନେ କିନ୍ତୁ ତତେଇକି ଖର୍ଚ୍ଚାନ୍ତ କରୁଛନ୍ତି ।

'ଅଜ୍ଞାନ ବିଚାର' ମାଧ୍ୟମରେ ପ୍ରଥମେ ଗ୍ରାହକଙ୍କୁ ଆମର ଏ ପରାମର୍ଶ- ଏଭଳି କଲ୍‌ରେ ବେଶୀ ଉତ୍ତେଜିତ ନହୋଇ କେବଳ ଲାଲ ସୁଇଚ୍‌ରେ ହାତ ମାରନ୍ତୁ, କାରଣ ଉତ୍ତେଜନା ଭୁଲ କରାଏ । ମୋବାଇଲ ନେଟ୍‌ୱାର୍କ କମ୍ପାନୀଗୁଡ଼ିକୁ ଆମର ଅନୁରୋଧ, ସୂଚନା ଅଧିକାର ଆଇନର ଅଧିକାରୀ ଏଇ ଭାରତୀୟ ନାଗରିକଙ୍କୁ ସୂଚନା ଦେବା ନାଁରେ ଏଭଳି ଗାଳିଗୁଲଜ କରନ୍ତୁ ନାହିଁ କି ଲୁଟନ୍ତୁ ନାହିଁ ।



# ଦଶ'ରା ବନ୍ଧୁ

ଦଶ'ରା ଛୁଟି ସରିଆସିଲାଣି । କାଲି ଆଡ଼କୁ ସ୍କୁଲ କଲେଜ ସବୁ ଖୋଲିଯିବ । ଆଶା କରିବା କଥା- ଏମାନେ ସମସ୍ତେ ଆଜି ସଂଧ୍ୟା ସୁଦ୍ଧା ଗାଆଁକୁ ପଳାଇବେ । କିନ୍ତୁ ଯିବାର ତ ନାଁ କେହି ଧରୁନାହାନ୍ତି । ଆସିବାର ତିଥି କହିନଥିଲେ ଯେତେବେଳେ ଯିବାର ତିଥି ବା କହିବେ କାହିଁକି । ତିଥି କହନ୍ତି ନାହିଁ ବୋଲି ତ ଏମାନେ ଅତିଥି ।

ମୁହଁ ଖୋଲି ପଚାରିଦେଲେ ଖରାପ ଭାବିବେ ବୋଲି ପଚାରି ବି ହେଉନି । ସକାଳୁ ତାଙ୍କ ଲୁଗାପଟା ସଜାସଜି ଦେଖି ମତେ ଲାଗୁଥିଲା ନିଶ୍ଚୟ ଚାଲିଯିବେ । ମୁଁ ତାଙ୍କ ମୁହଁକୁ ଅନେକ ସମୟରେ ଚାହିଁ ରହିଥାଏ- କାଳେ ଯିବା କଥା କିଛି କହିବେ କି ? କିନ୍ତୁ ସବୁବେଳେ ନିରାଶ ହେଇଚି, ବରଂ ଶୁଣିଚି- ଏଇଠୁ ନନ୍ଦନକାନନ କେତେ ବାଟ ହେବ ? ମିତା ଭାଉଜଙ୍କ ଭଉଣୀର ଦେଢ଼ଶୂର ଏଇ ତୁଳସୀପୁରରେ କୋଉଠି ରହନ୍ତି, ତୁମେ ତାଙ୍କ ଘର ନିଶ୍ଚୟ ଦେଖିଥିବ ? ଯାଡୁସ୍ୟାଡୁ କ'ଣ ଟିକେ ଖାଇଦେଲେ ମୋ ପେଟରେ ଆଉ ଯାଉନି, ଏଠି ପେଟ ପାଇଁ ଭଲ ଡାକ୍ତର କିଏ ଅଛନ୍ତି ? ଏଇଭଳି କେତେବେଳେ କ'ଣ ମନେ ପଡ଼ିଯାଉଥିବା ପ୍ରଶ୍ନ ସହ ଆଦେଶକୁ ଅପେକ୍ଷା କରିବାକୁ ମୁଁ ବାଧ୍ୟ ହେଇପଡ଼େ ।

ଏ ଅତିଥିଙ୍କୁ ସେଦିନ ଚଣ୍ଡୀଙ୍କର ଷୋଳବେଶ ଦେଖେଇ ନେଲାବେଳେ ଚଣ୍ଡୀଙ୍କ ପାଖରେ ଗୁହାରି କରିଥିଲି- ମା'! ୟାଙ୍କର କେତେବେଳେ କ'ଣ ମନେ ପଡ଼ିଯାଉଛି, ମୁଁ ଘାଣ୍ଟିଚକଟି ହେଉଚି । ୟାଙ୍କର ସ୍ମରଣଶକ୍ତି ଟିକକ ଲୋପ କରିଦେ ମା' । ଘରକୁ ଆସି ଘରଣୀଙ୍କୁ ବି ଏଇ ଗୁହାରି କଥା କହିଥିଲି । ଘରଣୀ କହିଲେ, 'ଏମିତି ତ ଏମାନଙ୍କର ଆଉ କିଛି ମନେ ନାହିଁ, ନିଜର ଘରଟାଏ ଅଛି ବୋଲି ସେମାନେ ପନ୍ଦର ଦିନ ହେଲା ଭୁଲିଗଲେଣି, ବରଂ ମା'ଙ୍କୁ ଯାଇ କୁହ ତାଙ୍କୁ ତାଙ୍କର ଘରଟାଏ ଅଛି ବୋଲି ଟିକେ ମନେ ପକାଇଦେବେ ।

ୟାଙ୍କର ଘରେ ଦିନ କଟୁନି ଯେ ଘରବାଲା ଘରେ ଯାଇ ଆସର ଜମେଉଚନ୍ତି । ଘରବାଲାକୁ ପ୍ରଶଂସାକରି ଦିନେ କହିଚନ୍ତି- 'ଯା' ହେଉ ଆପଣଙ୍କ ଭଳି ଘରମାଲିକ ମିଳିବା ଆଜିକାଲି ବଡ଼ କଷ୍ଟ । ଆପଣ ହିଟର ଲଗେଇବା ପାଇଁ ଦେଇନଥିଲେ ଆଜିକାଲିର ମହଙ୍ଗା ଯୁଗରେ ଆମ ବନ୍ଧୁ ଗ୍ୟାସ ପିଛା ଖର୍ଚ୍ଚ କରି କରି ବଡ଼ ହୀନସ୍ତା ହୁଅନ୍ତେଣି' । ଏ ଯାଏଁ ଘରବାଲାକୁ ଲୁଚାଇ ଆମ ଘରଣୀ ହିଟର ଜାଳୁଥିଲେ । ଯା'ହେଉ ଅତିଥିଙ୍କ ସୌଜନ୍ୟରୁ ଆର ମାସଠୁ ମୋ ଘରଭଡ଼ା ଆଉ ୫୦୦ ଟଙ୍କା ବଢ଼ିଗଲା ବୋଲି ଧରିନେଲି ।

ଏ ଅତିଥିମାନଙ୍କ ଦ୍ୱାରା ଅତିଷ୍ଠ ହେଇ ମୁଁ ମୋର ସାଙ୍ଗ ସାଥୀଙ୍କଠୁ ପରାମର୍ଶ ନେଇଚି । ମୋ ସାଙ୍ଗଟିଏ କହିଲା- 'ଭାଇ ! ସେ ତମକୁ ପେଟ ପାଇଁ ଡାକ୍ତର କଥା କହୁଚନ୍ତି ତ ! ମୋ ଘରକୁ ଜଣେ ଆସିଥିଲେ । ସେ ସେମିତି ଡାକ୍ତର ଖୋଜୁଥିଲେ । ମୁଁ ତାଙ୍କୁ ଗୋଟେ ଦାମିକା ନର୍ସିଂହୋମ୍‌ରେ ଆଡ଼ମିସନ୍ କରେଇଦେଲି । ଏଣ୍ଡୋସ୍କୋପି ନାଁ ଶୁଣି ସେ ନିର୍ସିଂହୋମ୍ ଛାଡ଼ି ଏମିତି ପଳେଇଗଲେ ଯେ ମୋ ଘର ବି ମୁକ୍ତ, ଡାକ୍ତରଖାନା ଡ୍ୟୁଟିରୁ ମୁଁ ବି ମୁକ୍ତ' ।

ଆଉ ଜଣେ ବନ୍ଧୁ କହିଲେ, 'ଭାଇ ! ମୋ ଘରକୁ ଏମିତିଆ ଅତିଥି ଆସିଲେ, ୟିବାର ନାଁ ଧରିଲେନି । ସେ ଦିନେ ଖଟରେ ବସିଥିବାବେଳେ ମୁଁ କାଗଜପତ୍ର ଦରାଣ୍ଡିବା ଆରମ୍ଭ କଲି । ଅତିଥି ମତେ ପଚାରିଲେ- କ'ଣ ଜରୁରୀ କାଗଜପତ୍ର ଖୋଜୁଚନ୍ତି ବୋଧେ ? ମୁଁ କହିଲି- ହଁ ଆଜ୍ଞା, ମୋ ଘରର ପଟ୍ଟା- ପାଉତି ଖୋଜୁଚି । ପଟ୍ଟା-ପାଉତି ଦେଖି ଜାଣିବାକୁ ଚାହୁଁଚି ଏ ଘରର ମାଲିକ ମୁଁ ନା ତମେ ! ସେହି ଦିନ ହିଁ ଅତିଥି ଘର ଛାଡ଼ି ଚାଲିଗଲେ' ।

ମୁଁ ତ ଏସବୁ କରିପାରିବିନି, ଭାବୁଚି ଆଜି ହାତଯୋଡ଼ି ତାଙ୍କୁ କହିବି- 'ମୋ ଘରେ ଦଶ'ରା ପାଳିଲ, ଏଇଠି ରାବଣପୋଡ଼ି ଦେଖିଲ, ଏଇଠି ଭସାଣି କଲ, ଏଇଠି କୁଆଁରଁ ପୁନେଇଁ ମନେଇଲ :

**ଏବେ ମୋ ଛୁଆପିଲାଙ୍କ ମୁହଁକୁ ଟିକେ ଦେଖ,**
**ଦୀପାବଳି ଯୋଜନାଟା ଅନ୍ତତଃ ନିଜ ଘରେ ରଖ' ।**



# ପାପ ଆଖି

**କା**ମଳ ରୋଗୀକୁ ପୁରା ଦୁନିଆଟା ହଳଦିଆ ଦେଖାଯିବା ପରି ନିଜ ମନରେ ପାପଭର୍ତ୍ତି ହୋଇଥିବା ଲୋକ କାହା ସଂପର୍କରେ ପବିତ୍ରତାକୁ ଦେଖିପାରେ ନାହିଁ । ଏମିତିଆ ଲୋକଙ୍କର ଆମ ସମାଜ ଭିତରେ ଅଭାବ ନାହିଁ । ତ୍ରେତୟା ଯୁଗର ରଜକ-ରଜକୀଙ୍କ ବଂଶଜ ଏମାନେ, ସୀତା ଭଳି ଚରିତ୍ରକୁ ବି କଳଙ୍କିତ କରିଦେଇପାରନ୍ତି ।

ଅମୁକବାବୁ ଘରେ ନଥିବାବେଳେ ମଟରସାଇକଲ ନେଇ କିଏ ତାଙ୍କ ଘରକୁ ଆସିଥିଲା, ତାଙ୍କ ଘରେ ଗାଡ଼ି ରଖି କେମିତି ତା ଜମି ଦେଖିବାକୁ ଯାଇଥିଲା ଏସବୁ କଥାରେ ଏମାନେ ଖୁବ୍ ରୁଚି ରଖନ୍ତି । ଆଉ ସେଇ କଥା ଦେହରେ କିଛି ଲଥା ଯୋଡ଼ିଦେଇ ଅନ୍ୟ ଆଗରେ କହିବାରେ ଏମାନେ ଭାରି ଅନନ୍ଦ ଅନୁଭବ କରନ୍ତି । ଶୁଣୁଥିବା ଲୋକ ବି ପରମାନନ୍ଦ ପାଇଥାନ୍ତି ।

ପରଘରକୁ ଉଣ୍ଡି ଉଣ୍ଡି ନିଜ ଘରକୁ ଅଣଦେଖା କରୁଥିବା ମୋର ଜଣେ ସହକର୍ମୀଙ୍କୁ ଯେମିତି ପସ୍ତେଇବାକୁ ପଡ଼ିଲା, ସେମିତି ଅବସ୍ଥା କେହି ନଭୋଗନ୍ତୁ, ସେଇଥିପାଇଁ ମୋର ଏ ଆଲେଖ୍ୟଟି ରଜକ-ରଜକୀ ବଂଶଜଙ୍କ ଉଦ୍ଦେଶ୍ୟରେ ।

କବି କଳାକାରମାନଙ୍କର କାଳେ ଶହ ଶହ ପ୍ରେମିକା ଥାଆନ୍ତି । ଏକଥା ମୋଠୁ ବେଶୀ ଜାଣନ୍ତି ମୋର ସହକର୍ମୀ ଦୀପୁ ଚୌଧୁରୀ । ଅଫିସ୍ ଲୋକଙ୍କ ଆଗରେ ମୋ ନାଁରେ ଅଜବ ଅଜବ ଗୁଜବମାନ ତାଙ୍କ ଦେଇ ତିଆରି ହୋଇଥାଏ ।

ଗତ ଗୁରୁବାର ଦିନ ଗୋଟେ ଝିଅକୁ ମୁଁ ମୋ ମଟରସାଇକଲରେ ବସାଇ ଭୁବନେଶ୍ୱରରୁ କଟକ ଆସୁଥିଲି । କେମିତି ଏ ଦୃଶ୍ୟଟା ଦୀପୁ ଚୌଧୁରୀଙ୍କ ଆଖିରେ ପଡ଼ିଯାଇଛି । ସେ କାହାଣୀଟାକୁ ଅତିରଞ୍ଜିତ କରି ଅଫିସ ଲୋକଙ୍କ ଆଗରେ ଏଭଳି ଶୁଣେଇଚନ୍ତି, ମୁଁ ଅଫିସ୍‌ରେ ପହଞ୍ଚୁ ପହଞ୍ଚୁ କିଛି ବନ୍ଧୁ ପୂରା ଶଣ୍ଢୁଆସୀ ଆକ୍ରମଣ ଆରମ୍ଭ କରିଦେଲେ ।

- କ'ଣ ହୋତାବାବୁ ଆଜି ଗାଡ଼ି ପଛରେ ପୂରା ଲାଲେ ଲାଲ ?

ମୁଁ ଗମ୍ଭୀର ଅଥଚ ବିନମ୍ର ଭାବରେ କହିଲି, 'ଭାଇ ! କିଛି କହିବା ପୂର୍ବରୁ ତ ଟିକେ ଭାବିଚିନ୍ତି କହନ୍ତୁ । ମୋ ସାଙ୍ଗରେ ଆସୁଥିବା ସେ ଝିଅଟି କିଏ, କାହାର ସେ କେମିତି ସମ୍ପର୍କୀୟା, କିଛି ନବୁଝି ନସୁଝି ଏମିତିଆ ମନ୍ତବ୍ୟ ଦିଅନ୍ତୁ ନାହିଁ ।

ସମସ୍ତେ ଦୀପୁ ଚୌଧୁରୀ ମୁହଁକୁ ଚାହିଁଥାନ୍ତି । ଦୀପୁବାବୁ କୁଟିଳିଆ ହସଟେ ହସି ଆଙ୍ଗୁଳିରେ ଟେବୁଲ ବାଡ଼ୋଇଥାଏ । ମୁଁ ପୁଣି ଆରମ୍ଭ କଲି - 'ଦୀପୁ ବାବୁ ! ଆଜି ଆପଣଙ୍କ ମୋବାଇଲ ସ୍ୱିଚ୍ ଅଫ୍ ଥିଲା ବୋଧେ ? ଆପଣଙ୍କ ଭଉଣୀ ଭୁବନେଶ୍ୱରରୁ ଆସିବାର ଥିଲା, ଆପଣଙ୍କୁ ଯୋଗାଯୋଗ କରିପାରିଲାନି । ବସ୍ ଷ୍ଟ୍ରାଇକ୍‌ରେ ସେ ଅଟୋକୁ ଅପେକ୍ଷା କରି ଠିଆହୋଇଥିଲା । ମୋର ଦେଖା ହୋଇଗଲା ବୋଲି ମୁଁ ତାକୁ ସାଙ୍ଗରେ ନେଇ ଆସିଲି ।

ଦୀପୂବାବୁ ମୁହଁରୁ ହସ ଉଭେଇଗଲା । ଆଉ ମୁଣ୍ଡ ଟେକି ବସିପାରିଲା ନାହିଁ, ମୁଣ୍ଡକୁ ତଳକୁ ପୋତି ନିଜକୁ ଧିକ୍କାର କରୁଥିଲା । ସେ ଝିଅଟା କେବଳ ମୋ ଗାଡ଼ିରେ ବସି ଆସିଥିଲା ବୋଲି କହିଥିଲେ ହୁଏତ ସେ ଏମିତି ଅପମାନିତ ହୋଇ ନଥାନ୍ତା । ସହକର୍ମୀଙ୍କ ଆଗରେ ଝିଅର (ଭଉଣୀର) ବସିବା ଠାଣୀରୁ ଆରମ୍ଭ କରି ଆହୁରି କଦର୍ଯ୍ୟ କଦର୍ଯ୍ୟ କଥାମାନ କହିସାରିଥିଲା ।



# କଳାପୂଜାରୀ

ମୁମ୍ବଇର ନରିମାନପଏଣ୍ଟ ଭଳି ଆମ କଟକର ଚହଟାଘାଟ । ସବୁବେଳେ କିଛି ନା କିଛି ସୁଟିଂ ଏଠି ଚାଲିଥାଏ । ସେଦିନ ବସନ୍ତ ଭାଇଙ୍କର ଗୋଟେ ସିନେମା ସୁଟିଂ ଚାଲିଥିଲା । ଆକାଶ ଓ ସବ୍ୟସାଚୀ, ଦିଜଣଙ୍କ ମଟରସାଇକଲ ଧକ୍କା ହେବାର ଥିଲା । ସୁଟିଂ ସେଟ୍‌କୁ କେବଳ ସବ୍ୟସାଚୀଙ୍କର ଗୋଟେ ମଟରସାଇକଲ ଆସିଥିଲା । ଆଉ ଗୋଟାଏ ଖୋଜାପଡ଼ିଲା । ବସନ୍ତ ଭାଇଙ୍କର ଚିହ୍ନା ପରିଚୟ ଥିଲା ପିଲୁ ମହାନ୍ତି ସାଙ୍ଗେ । ପିଲୁ ମହାନ୍ତି ତାଙ୍କ ମଟରସାଇକଲଟା ଦେବା ପରେ ସୁଟିଂ ଚାଲିଲା ।

ଏହି ଘଟଣାର ମଜା ଆସିଗଲା ଫିଲ୍ମଟା ରିଲିଜ୍ ହେବା ପରେ । ପିଲୁ ମହାନ୍ତି ପିଲାପିଲି ସହ ପ୍ରିମିୟର ଶୋ' ଦେଖିବାକୁ ଯାଇଥିଲେ । ପରେ ପରେ ଅଫିସ୍ ସାଙ୍ଗ, ସାଇପିଲା, ଅନ୍ୟାନ୍ୟ ବନ୍ଧୁବାନ୍ଧବ ଏମିତିଆ ବହୁ ଲୋକଙ୍କୁ ନେଇ ସେ ଚାରି ଚାରି ଥର ସିନେମା ଦେଖେଇ ଆସିଲେଣି । ଗତ କାଲି ମତେ ଡାକିକି ନେଇଗଲେ । ମୁଁ ଭାବୁଥାଏ ସିନେମାରେ ଏମିତି କ'ଣ ଅଛି ଯେ ଇୟେ ମତେ ଏଡେ ଆଗ୍ରହରେ ଡାକି ଆଣିଚନ୍ତି ।

ସିନେମା ଚାଲିଲା । ହଠାତ୍ ପିଲୁ ମହାନ୍ତି ପାଟିକଲେ - ହେଇ ଦେଖନ୍ତୁ ସବ୍ୟସାଚୀ ମଟରସାଇକଲ ନେଇ ଆସିଲା । ସ୍ୟାଡୁ ଆଉ ଗୋଟେ ମଟରସାଇକଲ ଆସିବ । ସେୟା ହିଁ ଘଟିଲା । ପିଲୁ ମହାନ୍ତି ଏଥର ପଚାରିଲେ - 'ଜ୍ଞାନଭାଇ ଚିହ୍ନି ପାରୁଛନ୍ତି ?' ମୁଁ କହିଲି, 'ହଁ, ଇୟେ ତ ଆକାଶ । ' ପିଲୁ ମହାନ୍ତି ବିରକ୍ତ ହେଇ ପୁଣି ପଚାରିଲା, 'ଆଉ କିଛି ଚିହ୍ନିପାରୁ ନାହାନ୍ତି ?' ମୁଁ ସଂକ୍ଷିପ୍ତ ଉତ୍ତର ଦେଲି-ନା । ପିଲୁ ମହାନ୍ତି ଗମ୍ଭୀର ହେଇ କହିଲେ- ଆକାଶ ଯୋଉ ମଟରସାଇକଲଟା ଚଲଉଚି ସେଇଟା ମୋ ମଟରସାଇକଲ ।'

ଆଜ୍ଞା ! ସିନେମାରେ ନିଜ ଗାଡ଼ିକୁ ଦେଖେଇବାକୁ ଯଦି ଜଣେ ଏତେ ହକପକ ହେଇପାରେ, ନିଜ ମୁହଁ ଦେଖାଇବା ପାଇଁ ଜଣେ ଛକପକ ହେବା କିଛି ବିଚିତ୍ର କଥା ନୁହେଁ । ଆଜିକାଲି ମାୟା ନଗରୀର ମାୟା ବହୁ ଲୋକଙ୍କୁ ଘାରିଚି । ପିଲା ଆଲବମ୍‌ରେ ରୋଲ୍ କରିବେ ବୋଲି ଘରୁ ଟଙ୍କା ଚୋରି କରି ପଳାଇ ଆସୁଛନ୍ତି । ଏସବୁର ଫାଇଦା ଉଠାଉଥିବା ନିର୍ଦ୍ଦେଶକ, ପ୍ରଯୋଜକଙ୍କର ବି ଏ ଦେଶରେ ଅଭାବ ନାହିଁ । ଏଇଥିପାଇଁ କେବଳ ଏମାନଙ୍କୁ ଦୋଷ ଦେଇ ଲାଭ ନାହିଁ, ଯଦି ଆଲବମ୍ ହିରୋଇନ୍ ରୋଲଟେ ପାଇବା ପାଇଁ ଝିଅଟାଏ କହେ - ମୁଁ ସବୁ କିଛି କରିବା ପାଇଁ ପ୍ରସ୍ତୁତ; ତେବେ ଏଇ ମାଟିରେ ବି ଶକ୍ତି କାପୁର ଓ ମଧୁର ଭଣ୍ଡାରକର ଭଳି ଲୋକ ତିଆରି ହେଇଯିବେ ।

ବେଳେବେଳେ ସମ୍ବାଦପତ୍ରରେ ବିଜ୍ଞାପନ ଆସେ - ସିନେମା, ସିରିଅଲ ପାଇଁ କଳାକାର ଆବଶ୍ୟକ । ଅନୁଭବୀମାନେ ଏହାର ଅର୍ଥ ବୁଝେଇ କହନ୍ତି - 'ପ୍ରଯୋଜକଙ୍କର ଟଙ୍କା ଆବଶ୍ୟକ ।' ଗୋଟାଏ ଆଲବମ୍‌ରେ ପଚାଶ ହଜାର ଖର୍ଚ୍ଚ ହେଉଥିବାବେଳେ କେବଳ କଳାକାରଙ୍କଠୁ ହିଁ ଲକ୍ଷେ ଆଦାୟ କରିପାରୁଥିବା ବେପାରୀ ଏଠି ଅଛନ୍ତି । ଅନେକ ସମୟରେ ଏ ଆଲବମ ରିଲିଜ ବି ହେଇପାରେନା । ତେବେ ଏ ବିଜ୍ଞାପନ ମୋହରେ ପଡ଼ି ଆଲୋକକୁ ପତଙ୍ଗ ଟାଣିହେଇ ଆସିବା ଭଳି ଥୋକେ ଯୁବକ-ଯୁବତୀ ଆସନ୍ତି । ବାପା ପକେଟ୍ ଖାଲି କରନ୍ତି, ଅପବାଦ ଅଣ୍ଟିରେ ଲୁଚାଇ ଫେରନ୍ତି । ଶେଷରେ ପ୍ରଯୋଜକଙ୍କଠାରୁ ଉତ୍ତର ମିଳେ- ଯୋଉଦିନ ସୁଟିଂ ହେବ ଖବର ପହଞ୍ଚିବ, ଏବେ ଯାଅ । ଯେଉଁମାନେ କେବଳ ପରଦାରେ ମୁହଁ ଦେଖାଇବା ପାଇଁ ବିକଳ ହେଉଚନ୍ତି ତାଙ୍କୁ ଆମର କିଛି କହିବାର ନାହିଁ; କିନ୍ତୁ ନିରୁତା କଳାର ପୂଜାରୀଙ୍କୁ ପଦଟିଏ କହିବୁ - ହେ କଳାର ପୂଜାରୀ, ଏ କଳାବଜାରୀଙ୍କ ପ୍ରତି ସତର୍କ ରୁହନ୍ତୁ ।'



# ନର୍ସିଂହୋମ

**ବେ**ଣୁଭାଇ ବଡ଼ ପ୍ରେମୀ ଲୋକ । ଦିହ ବିଗିଡ଼ି ଯାଇଚି, ତଥାପି ସବୁଦିନ ପରି ମତେ ଦେଖି ସେ ଖୁସିରେ କୁରୁଳି ଉଠିଚନ୍ତି । ତାଙ୍କୁ ଖଟରୁ ଉଠିବା ମନାଥିବା ସତ୍ତ୍ୱେ ବି ଖଟିଆରୁ ଉଠି ବସିପଡ଼ିଚନ୍ତି ।- 'ଆରେ ଜ୍ଞାନବାବୁ ! ଆପଣ ତ ଏଇ ଡାକ୍ତରଖାନା ଖଟିଆରେ ବେଶୀ ମନେ ପଡୁଚନ୍ତି । ସର୍କାରୀ ଡାକ୍ତରଖାନାରେ ଭର୍ତ୍ତିହେବା ଦିନ ମୁଁ ଆପଣଙ୍କ ସେହି କବିତାକୁ ମନେ ପକାଉଥିଲି -

ଯାଉ ଯାଉ ଯେବେ
ନାକରେ ଦେଲୁ ରୁମାଲ୍
ଜାଣିଗଲୁ ଆମେ ପହଞ୍ଚିଲୁ ଏବେ ହସ୍ପିଟାଲ୍ ।
ଘରଣୀ କହିଲେ କେତେ ଜୋର୍‌ରେ ସତେ ଗନ୍ଧଉଚି
ମତେ ଖାଲି ଅଇ ଉଠଉଚି ।
କହିଲି,
ଗନ୍ଧଟା ଏଇଠି ଦର୍କାରୀ;
ନହିଲେ କେମିତି
କିଏ ସେ ଜାଣିବ
ହସ୍ପିଟାଲଟା ସର୍କାରୀ ।

ସତରେ ଜ୍ଞାନବାବୁ, ଗନ୍ଧରୁ ହିଁ ସର୍କାରୀ ହସ୍ପିଟାଲଟା ବାରିହେଇ ପଡ଼େ । ସର୍କାରୀ ହସ୍ପିଟାଲ ର ଅନ୍ୟସବୁ ସମସ୍ୟାକୁ ମୁଁ ସାତ ଦିନର ରହଣି ଭିତରେ ଅଙ୍ଗେ ନିଭେଇଚି । ବେହେରା, ନର୍ସଙ୍କଠାରୁ ଆରମ୍ଭ କରି ଡାକ୍ତରଙ୍କ ଅବହେଳାର ଶିକାର

ମୁଁ ହେଇଚି । ସବୁ ୱାର୍ଡ଼ର ଦୁର୍ଦ୍ଦଶା ମୁଁ ଦେଖିଚି । ମେଡିସିନ୍ ୱାର୍ଡ଼ରେ ଥିବା ବେଳେ ଆପଣଙ୍କର ସେଇ ପଙ୍‌କ୍ତିଟି ମନେପଡୁଥିଲା

ତା' ପରଦିନ
ଡେଇଁ ଡେଇଁକି
ଡାକ୍ତର ଆସିଲେ ରାଉଣ୍ଡ୍‌ରେ
ବେଡ଼୍‌ରେ ଯେତେ
ରୋଗୀ ନଥିଲେ
ଦି'ଗୁଣା ଥିଲେ ଗ୍ରାଉଣ୍ଡ୍‌ରେ ।

ୱାର୍ଡ଼ ନୁହେଁ ତ ଗୋଟାଏ ଗୋରୁ ହାଟ । ପୁଣି ଡାକ୍ତରଖାନାର ସାହାଣମେଲା । କିଏ କୁଆଡୁ ଆସୁଚି, କୁଆଡ଼େ ପଶୁଚି, କିଏ କା' ଉପରେ କୁଦୁଚି କୋଉଠି କିଛି କଟକଣା ନାହିଁ । ଏସବୁ ଅବସ୍ଥା ଦେଖି ମୋ ପୁଅ ପୁତୁରା ମିଶି ଡାକ୍ତରଙ୍କ ଉପରେ ଚଢ଼ଉ ଆରମ୍ଭ କରିଦେଲେ । ପିଲାଗୁଡ଼ା କିଛି ବୁଝୁନାହାନ୍ତି - ଡାକ୍ତର ସାଙ୍ଗେ ଝଗଡ଼ା କଲେ ରୋଗୀର ଅବସ୍ଥା କ'ଣ ହେବ ? ମୁଁ ପଚାରିଲି - 'ସେଉଠୁ?'

ବେଣୁଭାଇ କହିଲେ 'ସେଇଠୁ ଆଉ କ'ଣ ଆପଣ ବତାଇଥିବା ଫର୍ମୁଲା ପ୍ରୟୋଗ କଲି । ଶୁଭ୍ରବସ୍ତ୍ର ଧାରିଣୀ, ସରସ୍ୱତୀ ରୂପିଣୀ ବୀଣାଦିଦି (ନର୍ସ)ଙ୍କଠାରୁ ସଦ୍‌ବୁଦ୍ଧି ନେଲି । ସେ ମତେ ଏକ ନର୍ସିଂହୋମର ଠିକଣା ଦେଲେ ।

ପଚାରିଲି -'ଏଇଠି ତ ଭଲ ଅଛନ୍ତି ନା?'

ବେଣୁଭାଇ କହିଲେ, 'ଭଲ କ'ଣ? ମହରଗରୁ ଆସି କାନ୍ତାରରେ ପଡ଼ିବା କଥା । ଅବଶ୍ୟ ନର୍ସିଂହୋମ ଟା ସର୍କାରୀ ଡାକ୍ତରଖାନାଠୁ ଚହଟଚିକ୍କଣ , ସଫାସୁତର । ସେଇଠି ଶୁଖିଲା ବ୍ରେଡ଼୍, ଦରସିଝା କ୍ଷୀର ସାଙ୍ଗକୁ ସିଝା ଅଣ୍ଡା ମିଳୁଥିଲା । ଏଠି ଦୋଷା, ଇଡ଼ଲି, ସମ୍ବର, ଘୁଗୁନି, କଫି, ସୁପ୍ ସବୁ ମିଳୁଚି । ସେଠି ଆମ ପୁଅ ପୁତୁରା ହଇରାଣ ହୋଇଯାଉଥିଲେ- ଅମକ ମିଡିସିନ୍ ଆଣ, ଅମୁକ ଟେଷ୍ଟ କରିବାକୁ ଯା' । ଏଠି ସେ ସବୁ ଝାମେଲା ନାହିଁ । ଏଇ ନର୍ସିଂ

ହୋମଭିତରେ ସେମାନେ ସବୁ ଖଞ୍ଜି ଦେଇଚନ୍ତି । ଭିତରେ ଆଟେଣ୍ଡାଣ୍ଟଙ୍କୁ ବି ରହିବା ମନା । ମତେ ଜଗିବା ପାଇଁ ଆସିଥିବା ପୁଅ ପୁତୁରା ଆରାମରେ ରିସେପ୍ସନ ରୁମ୍‌ରେ ବସି ଇଣ୍ଡିଆ-ଶ୍ରୀଲଙ୍କା ଟେଷ୍ଟ୍ ମ୍ୟାଚ୍ ଦେଖୁଛନ୍ତି । ଏଠିକାର ନର୍ସମାନେ ଦିଲ୍ ଦେଇକି  ସେବା କରୁଚନ୍ତି, ଅବଶ୍ୟ ପରେ ବିଲ୍  ଦେଇକି ରୋଗକୁ ପୁଣି ବଢ଼େଇବେ ।

ମୁଁ କହିଲି - 'ଛାଡ଼ନ୍ତୁ ଆଜ୍ଞା ! ଖର୍ଚ୍ଚ ହେଉ, ସର୍କାରୀ ଡାକ୍ତରଖାନା ଅପେକ୍ଷା ଏଠି ତ ଡାକ୍ତରମାନେ  ଟିକେ ଭଲରେ ଦେଖୁଥିବେ ?

ବେଣୁଭାଇ ଦୀର୍ଘନିଃଶ୍ୱାସ ମାରି କହିଲେ, 'ସେଇ ଏକା କଥା ଭାଇ । ସେଇଠି ବରଂ ସର୍କାରୀ ଡ୍ୟୁଟି ବୋଲି ଭାବି ଦିନକୁ ଦୁଇଥର ରାଉଣ୍ଡ ମାରୁଥିଲେ, ଏଇଠି ଦି'ଦିନ  ଆଗରୁ ଥରେ ନାଡ଼ି ଚିପି ଯାଇଛନ୍ତି ଯେ ଯାଇଚନ୍ତି । ଔଷଧ, ଇଂଜେକ୍‌ସନରେ କମି ନାହିଁ । ଡାକ୍ତରଙ୍କ ଦେଖାପାଇବା ଏଠି ବି କଷ୍ଟ ।

ମୁଁ ପଚାରିଲି- 'ଏବେ କ'ଣ କରିବେ ?'

ବେଣୁଭାଇ କହିଲେ - ସେକଥା ମୁଁ ଆପଣଙ୍କୁ କ'ଣ ବୁଝେଇବି । ସେ କଥାଟା ଆପଣ ବି ଜାଣିଥିବେ । ଗୋଟେ ପିଲାକୁ ପଚରା ହେଲା 'ମନେକର, ତମେ ଜଙ୍ଗଲରେ ପଶିଯାଇଚ, ବାଘ ହାବୁଡ଼ରେ ପଡ଼ିଗଲ । କ'ଣ କରିବ? ପିଲାଟା କହିଲା - ମୋର କରିବାର କିଛି ନାହିଁ ଯାହା କରିବା କଥା ବାଘ କରିବ ।

ମୁଁ ଏବେ ନର୍ସିଂହୋମରେ ପଶିଯାଇଛି, ମୋର କିଛି କରିବାର ନାହିଁ, ଯାହା କରିବା କଥା ନର୍ସିଂହୋମବାଲା କରିବେ ।



# ବହିବିକ୍ରି

'ଧାରା ଶ୍ରାବଣର ରାତି । ଶ୍ରାବଣୀ ଦେହରେ ତାତି । ଏମିତି ନିଝୁମ ରାତିରେ ଶ୍ରାବଣୀର ପାଖେ ପାଖେ ସାଥୀ ହୋଇ ଥା'ନ୍ତି ବାଦଲଭାଇ । ଶ୍ରାବଣୀ ମୁଣ୍ଡରେ ହାତରଖି ବାଦଲଭାଇ ପଚାରିଲେ-ଶ୍ରାବଣୀ ! କେମିତି ଲାଗୁଛି ?'

ଏମିତି କିଛି ପଙ୍‌କ୍ତି ମୋ ବୟସର ସାହିତ୍ୟପ୍ରେମୀଙ୍କର ମନେ ପଡ଼ିଲା ଭଳି ଲାଗୁଥିବ ନିଶ୍ଚୟ । 'ଚାନ୍ଦିନୀ ଦେଇର ଚୋରା ଚାହାଣି', 'ଆତତାୟୀ ଡାନିଏଲ' ଭଳି ଉପନ୍ୟାସ, ଡିଟେକ୍ଟିଭ ପଢ଼ିବା ପାଇଁ ଆମକୁ ବାରଣ ଥିଲା । ଆମେ ସେ ଚଟି ବହିକୁ ଲମ୍ବା ଏକ୍ସରସାଇଜ ଖାତା ଭିତରେ ପୂରାଇ ଆଟୁ ତଳେ, ବାଡ଼ି ବାରଣ୍ଡାରେ ଲୁଚାଇ ଲୁଚାଇ ପଢୁଥିଲୁ । ସ୍କୁଲ ପଢ଼ିଲାବେଳେ ବି ସେ ସବୁ ସହଜରେ ବୁଝି ହେଉଥିଲା । ପୁଲକିତ ହେଉଥିଲୁ , ରୋମାଞ୍ଚିତ ହେଉଥିଲୁ । କେବଳ ଆମେ ନୁହଁ, ଆମକୁ ଏ ବହି ସବୁ ଯୋଗାଉଥିବା ଆମ ମଇଁଷି ଗୋଠ ଜଗାଳି ଜଟିଆ ବି ପଢୁଥିଲା । ଚଟି ବହିଟିକୁ ତା' ଅଣ୍ଟା ଓ ଲୁଙ୍ଗି ମଝିରେ ଗୁଞ୍ଜିଦେଇ ସେ ମଇଁଷି ଫିଟଉଥିଲା । ମଇଁଷି ଚରିଲାବେଳେ ଆରାମରେ ଗଛମୂଳେ ବସି ବହି ପଢୁଥିଲା ।

ଆଜିକାଲି ସେ ଚଟି ଉପନ୍ୟାସ କାହିଁ ଆଉ ସେ ଲେଖକ କାହାନ୍ତି ? କୁହାଯାଏ- ସେମାନଙ୍କୁ ସାହିତ୍ୟିକ ମର୍ଯ୍ୟାଦା ନମିଳିବାରୁ ସେମାନେ ଏ ବୃତ୍ତିରୁ ଅପସରିଗଲେ । ଯୋଉ ସାହିତ୍ୟକୁ ସମସ୍ତେ ବୁଝିଯାଇପାରନ୍ତି ସେଗୁଡ଼ାକ କାଳେ ସାହିତ୍ୟ ନୁହେଁ ! ଲେଖାଟିଏ ପଢ଼ିଲାବେଳେ ଯଦି ମୁଣ୍ଡ ବିନ୍ଧି ନଗଲା, କେଶ ଟାଣି ହେଇ ଅଲରା ହେଇ ନଗଲା ସେଗୁଡ଼ାକ କି ସାହିତ୍ୟ? ଜଟିଆ ଭଳି ଦରପାଠୁଆ, କିଶୋର ବୟସର ପିଲା ଯାହାକୁ ବୁଝିଦେଇ ପାରିଲେ ସେଇଟା ସାହିତ୍ୟ କେମିତି ହବ ?

ଆଜ୍ଞା ! ଆମେ ସାହିତ୍ୟ ସମାଲୋଚକ ନୁହଁ । ସେ ଗୁଡ଼ାକ ସାହିତ୍ୟ କି ନୁହେଁ ଆମ୍ଭେ ଜାଣିନାହୁଁ; କିନ୍ତୁ ଗୋଟିଏ କଥା ଆମ୍ଭେ କହିପାରବୁ- ସାହିତ୍ୟ ପ୍ରେମର ଗଙ୍ଗାକୁ ଆମ ପାଖରେ ପହଞ୍ଚାଇଥିବା ଭଗୀରଥ ଏମାନେ । ତାଙ୍କ ଉପନ୍ୟାସ ପଢ଼ି ଆମ ସାହିତ୍ୟ ପ୍ରୀତି ବଢ଼ିଲା ପରେ ଆଜି ଆମେ 'ଅମାବାସ୍ୟର ଚନ୍ଦ୍ର,', 'ଲଜ୍ଜା', 'ଯାଜ୍ଞସେନୀ' ଆଦି ପଢ଼ିପାରୁଚୁ । ଏମାନେ ଯେ ରାଜ୍ୟରେ ଗୋଟେ ପାଠକ ଗୋଷ୍ଠୀ ତିଆରି କରିଯାଇଛନ୍ତି ଏକଥାକୁ ବି ଅସ୍ୱୀକାର କରିହେବ ନାହିଁ । ହୁଏ ତ ତାଙ୍କ ବହିର ଚଟି କଳେବର କାରଣରୁ ତାଙ୍କୁ ଶସ୍ତା ସାହିତ୍ୟିକ ମାନ୍ୟତା ମିଳିଥିଲା ।

ଏବେ ସମାଲୋଚକଙ୍କ ପାଖ ଛାଡ଼ି ପ୍ରକାଶକଙ୍କ ପାଖକୁ ଯିବା । ଯୋଉମାନେ ବହିର କଳେବର ବୃଦ୍ଧିକରି ସାହିତ୍ୟକୁ ଶସ୍ତା ତଥା ସମ୍ଭ୍ରାନ୍ତ କରିଥାନ୍ତି । ସାହିତ୍ୟିକଙ୍କ ଆର୍ଥିକ ସ୍ଥିତିକୁ ଦେଖି ବହିଗୁଡ଼ିକ ବନ୍ଧେଇ କିମ୍ୱା ଚଟି ରୂପ ଧାରଣ କରନ୍ତି । ଜନପ୍ରିୟ ଭଗୀରଥମାନେ ପ୍ରକାଶକଙ୍କଠାରୁ ପଇସା ନେଉଥିବାରୁ ବହିର ଶସ୍ତାରୂପ ବିରୋଧରେ ଦାବି କରିପାରନ୍ତି ନାହିଁ; ବରଂ ସାହିତ୍ୟଠୁ ପାଠକଙ୍କୁ ଦୂରେଇଥିବା ବହୁ ଲୋକ ଅଛନ୍ତି ଯୋଉମାନଙ୍କ ବହି ଛାପିବା ପାଇଁ ପ୍ରକାଶକ ବେଶୀ ଆଗ୍ରହୀ ହୁଅନ୍ତି । ଏଇ ଲେଖକମାନେ ନିଜେ ଡିଟିପି କରନ୍ତି, କାଗଜ ଯୋଗାନ୍ତି, ଦାମୀ ଖୋଳ ଲଗେଇ ଦିଅନ୍ତି । ଏପରିକି ବହିର ଗରାଖବି ଏମାନେ ଯୋଗାଡ଼ କରନ୍ତି । ପ୍ରକାଶକ କେବଳ ଲାଭାଂଶ ହିଁ ପାଇଥାଏ ।

ଏହିଭଳି ମୋର ଜଣେ ବନ୍ଧୁଙ୍କ ବହି ଏଥର ରାଜଧାନୀ ପୁସ୍ତକମେଳାରେ ଦେଖିବାକୁ ପାଇଲି । ବନ୍ଧୁଙ୍କୁ ପଚାରିଲି, 'ଭାଇ ! ବହିର ବିକ୍ରିବଟା କିପରି ଚାଲିଛି ?' ବନ୍ଧୁ ହସିଦେଇ କହିଲେ, 'ବହି ବିକ୍ରିର ହିସାବ ପ୍ରକାଶକଙ୍କ ପାଖରେ, ମୋପାଖରେ କେବଳ ଗୋଟାଏ ବିକ୍ରିର ହିସାବ ଅଛି - ବହିଛପା ପାଇଁ ମୋ ସ୍ତ୍ରୀର ସୁନାହାରଟି ବିକ୍ରି ହୋଇଯାଇଚି ।



# ବଢୁଚି ଦର ଧୈର୍ଯ୍ୟ ଧର

'ଜଙ୍ଗଲ୍ ମେ ଭାଲୁ, ବିହାର୍ ମେ ଲାଲୁ ଔର ସବ୍‌ଜି ମେ ଆଲୁ'- ଏ କଥାଟି ଏବେ ଆଉ ଚାଲୁ ନାହିଁ । ବିନା ଭାଲୁରେ ବାଘ ହାତୀଙ୍କୁ ନେଇ ଜଙ୍ଗଲ ଚାଲିଚି । ବିନା ଲାଲୁରେ ବିହାର ଚାଲିଚି । ବିନା ଆଳୁରେ ତରକାରି ହେଇପାରିବ ନାହିଁ କାହିଁକି ? ଏମିତି ଆଳୁରେ କୋଉ ଖାଦ୍ୟସାରଗୁଡ଼ା ଅଛି ଯେ ତେଇଶ ଟଙ୍କା ଦେଇ ତାକୁ ଖାଇବ !

ମୋ କଥା ଶୁଣି ବିଗିଡ଼ିଗଲା ମଦନା'ଇ । କହିଲା, 'କୋଉ ଦରଟା ଏବେ ତଳେ ଅଛି ଯେ, ଡାଲି, ବୁଟ, ତେଲ, ଚିନି.... । କାହାର ଦାମ କମ ଅଛି ଯେ ଖାଇକି ବଞ୍ଚିବ । ଏ ଦୁଃଖୀ ଗରିବଙ୍କ କଥା କିଏ ବୁଝୁଚି, ସେମାନେ ତ ସବୁ ଉପରେ ଉଡ଼ିଲେ' ।

ମଦନା'ଇର ଇଙ୍ଗିତ ମୁଁ ବୁଝିଗଲି । କେବଳ ମଦନା'ଇ କାହିଁକି, କଥା କଥାରେ ଏବେ ସମସ୍ତେ ମନ୍ତ୍ରୀ ନେତାଙ୍କ ମୁଣ୍ଡରେ ଦୋଷ ଲଦିଦେଉଚନ୍ତି । ଯେମିତି ସେମାନେ ଶିଡ଼ିଟାଏ ରଖିଚନ୍ତି, ଦରଦାମ୍ ବଢ଼ିଗଲେ ଚଟ୍‌କି ଚଢ଼ି ଟାଣିଆଣିବେ । ଆରେ ଭାଇ, ସେମାନେ ବି ଦରଦାମ୍ ବୃଦ୍ଧିର ଶିକାର ହେଉଚନ୍ତି । ଖାଇବା ଜିନିଷର ଦାମ୍ ବଢ଼ିଗଲେ ଏଇ ଏମେଲେ, ଏମପିମାନେ ପୂରା ମୂଲ୍ୟ ଦେଇ ମିଲ୍‌ଟାଏ ଖାଇପାରନ୍ତି ନାହିଁ । ସେଇଥି ପାଇଁ ତ ବିଧାନସଭା କି ଲୋକସଭା ଅଧିବେଶନ ଚାଲିଲାବେଳେ ପାର୍ଲିଆମେଣ୍ଟ ଆଉ ଆସେମ୍ବ୍ଲିର କ୍ୟାଣ୍ଟିନରେ ଏମାନଙ୍କୁ ସବସିଡ଼୍‌ରେ ଖାଦ୍ୟ ଯୋଗାଇ ଦିଆଯାଏ । ପୂରା ପଇସା ଦେଇ ଖାଇବା ଯାଙ୍କୁ ଯେହେତୁ କଷ୍ଟ ହେଉଚି ଏମାନେ ଗରିବର ଦୁଃଖ ବୁଝନ୍ତି ନାହିଁ ବୋଲି ଆମେ କେମିତି କହିବା ?

ଏ ଦେଶରେ ସମସ୍ତଙ୍କର ଧାରଣା ଯେ ଆମ ମନ୍ତ୍ରୀ ନେତାମାନେ ବହୁତ ପଇସାବାଲା । ଆରେ ମଦନା'ଇ, ଏମାନେ ବି ତମ ଆମ ଭଳି ସାଧାରଣ ମଣିଷ । ତମର ଭୁଲ ଧାରଣା ଯେ ୟାଙ୍କର ବହୁତ ପୋତା ସମ୍ପତ୍ତି ଅଛି, ଆଠ-ଦଶ ଲେଖାଏଁ କୋଠା ଅଛି, ଫେକ୍ଟ୍ରି ଚାଲିଚି । ସବୁ ମିଛ କଥା । ଆମ ଏମେଲେ ଏମପିମାନଙ୍କ ଭିତରୁ ଅଧିକାଂଶ ଚାଷକରି ଜୀବିକା ନିର୍ବାହ କରନ୍ତି । ନିର୍ବାଚନ ଆଗରୁ ଏମାନେ ଯେଉଁ ସତ୍ୟପାଠ କରିଚନ୍ତି, ସେଥିରେ ଚାଲ ଦେଖିବ ବହୁ ଜଣଙ୍କର ଜୀବିକା କୃଷି ବୋଲି ଉଲ୍ଲେଖ ଅଛି । ଏମିତିକି ବଡ଼ ବଡ଼ ମନ୍ତ୍ରୀଙ୍କ ପୁଅ ବିଦେଶରେ ପାଠପଢ଼ି ଦିଲ୍ଲୀରେ ରହିକି ବି ଚାଷକାମ କରି ବଞ୍ଚିଛନ୍ତି । ଏବେ ତୁ କହ, ସାଧାରଣ ଚାଷୀଟିଏ ମନ୍ତ୍ରୀ ହେଲା ପରେ କ'ଣ ଆମ ଦୁଃଖ ଚିନ୍ତା କରୁନଥିବ ।

ଆରେ ଭାଇ ଧୈର୍ଯ୍ୟ ଧର । ଆମ ଦୁଃଖ କଥା ଚିନ୍ତାକରି ଏମାନେ ଚାଉଳ ଦର କମାଇଛନ୍ତି । ଏବେ ଚାଉଳ ଶସ୍ତା ଅଛି- ଖାଲି ଭାତ ଖା' । ଆସ୍ତେ ଆସ୍ତେ ଡାଲି ଶସ୍ତା ହେବ- ଡାଲି ଖାଇବୁ । ଧୀରେ ଧୀରେ ଆଳୁ ଦର ବି କମିବ- ଆଳୁ ଖାଇବୁ । ଧୈର୍ଯ୍ୟହରା ହେଲେ କିଛି ଖାଇପାରିବୁ ନାହିଁ । ଧୈର୍ଯ୍ୟର ଛୋଟ ଉଦାହରଣଟାଏ ତତେ ଦଉଚି । ମୁଁ ଜଣେ ବନ୍ଧୁଙ୍କ ଘରକୁ ଯାଇଥିଲି । ତାଙ୍କ ପୁଅଟା ଚତୁର୍ଥ ଶ୍ରେଣୀରେ ପଢ଼େ । ମୁଁ ତାକୁ ପଚାରିଲି- 'ବାବୁରେ, ପାଞ୍ଚ ପଞ୍ଚା କେତେ କହିଲୁ' ? ପିଲା ସାଙ୍ଗେସାଙ୍ଗେ କହିଲା, 'ପଞ୍ଚାବନ' । ତା' ବାପା (ମୋ ବନ୍ଧୁ) ଭେରି ଗୁଡ୍ କହି ତା' ପିଠିକୁ ଥାପୁଡ଼େଇ ଦେଲେ । ମୁଁ ଆଶ୍ଚର୍ଯ୍ୟହେଇ ବନ୍ଧୁଙ୍କୁ ପଚାରିଲି, 'ଭାଇ ! ତମ ପୁଅ ପାଞ୍ଚ ପଞ୍ଚା ପଞ୍ଚାବନ କହୁଚି, ତମେ ତାକୁ ଭେରି ଗୁଡ୍ କହୁଚ' ! ବନ୍ଧୁ ହସିଦେଇ କହିଲେ, 'ହଁ, ପୁଅ ଆଗରୁ ପଞ୍ଚସ୍ତରୀ କହୁଥିଲା, ଏବେ ପଞ୍ଚାବନ କହିଲାଣି, ଧୀରେ ଧୀରେ ପଚିଶି ନିଶ୍ଚୟ କହିବ' ।

ଠିକ୍ ସେହି ଭଳି ଭାଇ, ଚାଉଳ ଦର କମିଚି, ଡାଲି ଦର କମିଚି, ଆଳୁ ଦର ବି କମିବ- ଧୀରେ ଧୀରେ ସବୁ ଦର ନିଶ୍ଚୟ କମିବ । ଧୈର୍ଯ୍ୟଧରି ରହିଥା ।



# ବୋଲ ନମାନେ ମୋର ଜିଭ

ଆମ ଦେଶର ରାଜନୀତି ହେଉଚି ବାଦ ସର୍ବସ୍ୱ । ସାମ୍ୟବାଦ, ସମାଜବାଦ, ମନୁବାଦ, ମାନବବାଦ, ସମ୍ପ୍ରଦାୟବାଦ, ଜାତିବାଦ.... ଏମିତି ଯେ କେତେ ବାଦ ଗଣିହେବନି । ଯେତିକି ବାଦ, ସେତିକି ଦଳ । ଏଇଠି ବାଦର ମାନେ କ୍ଷମତା ପାଇଁ କନ୍ଦଳ । କାହା ସ୍ୱାର୍ଥରେ ଟିକେ ଆଞ୍ଚ ଆସିଲେ ବାଦକୁ ବାଦ୍ ଦେଇଦିଆଯାଏ, ଦଳରୁ ଆର ଦଳକୁ ଡିଆଁଡେଇଁ ହୁଏ ।

ଏହି ଭଳି ଦୀର୍ଘଦିନ ସାମ୍ୟବାଦ ଓ ସମାଜବାଦର କଥା କହୁଥିବା ଜଣେ ନେତା ଟିକଟ ପାଇବାରୁ ବଞ୍ଚିତ ହେଲେ । ଦୁଃଖରେ ମ୍ରିୟମାଣ ବାମପନ୍ଥୀ ନେତା ଜଣକ ଘୋଷଣା କରିଦେଲେ ଯେ ସେ ରାଜନୀତିରୁ ସନ୍ୟାସ ନେବେ । ଏଣେ ରାଷ୍ଟ୍ରୀୟ ତଥା ଧାର୍ମିକ ଭାବନାରେ ଦକ୍ଷିଣପନ୍ଥୀ ଦଳ 'ସନ୍ୟାସୀଙ୍କୁ ନେଇ ରାଜନୀତି' କରିବାକୁ ଚାହୁଁଥିଲେ । ରାଜନୀତିରୁ ସନ୍ୟାସ ନେଇଥିବା ନେତାଙ୍କୁ ସନ୍ୟାସୀ ବୋଲି ବିଚାର କରି ତାଙ୍କ ଦଳରେ ସାମିଲ କରିଦେଲେ । ସେଇଠୁ ଆରମ୍ଭ ହେଲା ବିଭ୍ରାଟ ।

ସର୍ବହରା, ଖଟିଖିଆ, ଦଳିତ, ନିଷ୍ପେସିତ, ବୁର୍ଜୁଆ..... ଭଳି ଶବ୍ଦଗୁଡ଼ା କଣ୍ଠସ୍ଥ କରିଥିବା ବାମପନ୍ଥୀ ନେତାଙ୍କୁ ନୂଆ ଦଳ ଅଡୁଆ ଅଡୁଆ ଲାଗିଲା । ଏହି ଦଳରେ ମନ୍ଦିର ପ୍ରସଙ୍ଗ ଅଛି, ଧାର୍ମିକ ବିଚାର ଅଛି । ଏସବୁକୁ ନେଇ ଭାଷଣ ଦେବାକୁ ପଡ଼ିବ । ଦକ୍ଷିଣିଆ ଭାବ ଆଉ ବାଉଁଆ ଶବ୍ଦକୁ ନେଇ ସେ ନୂଆ ଢ଼ଙ୍ଗରେ ରାମଚରିତ ଶୁଣାଇଲେ- 'ଖଟିଖିଆ, ସର୍ବହରାର ସାଥୀ କମ୍ରେଡ଼ ରାମଚନ୍ଦ୍ର ଯେତେବେଳେ ପୁଞ୍ଜିବାଦୀ, ସାମନ୍ତବାଦୀ ରାବଣକୁ ଆକ୍ରମଣ କଲେ, ସେତେବଳେ ଦଳିତ, ନିଷ୍ପେସିତ ବାନରସେନା ହିଁ ତାଙ୍କୁ ସାହାଯ୍ୟ କରିଥିଲେ ।'

ଆଜ୍ଞା ! ଏ ଭାବ ଆଉ ଶବ୍ଦ ତାଳଦେଇ ନଚାଲିଲେ ଆହୁରି ବଡ଼ବଡ଼ ବିଭ୍ରାଟ ଦେଖାଦେବାର ସମ୍ଭାବନା ଥାଏ । ସଂପ୍ରତି ରାଧୁବାବୁଙ୍କ ଦଳ ଛାଡ଼ି ଜଣେ ନେତା ଅଗାଧୁବାବୁଙ୍କ ଦଳରେ ଯୋଗଦେଲେ । ନୂଆ ଦଳରେ ଯୋଗଦେଇ ମଧ ୨୦ ବର୍ଷ ରହିଥିବା ପୁରୁଣା ଦଳ (ରାଧୁବାବୁଙ୍କ ଦଳ)କୁ ସେ ଭୁଲିପାରି ନଥିଲେ । କହୁକହୁ ଏବେ ଭାଷଣରେ କହି ପକାଇଲେ- 'ଅଗାଧୁବାବୁଙ୍କ ନେତୃତ୍ୱରେ ଏବେ ଆମ ରାଧୁବାବୁଙ୍କ ଦଳ ନିଶ୍ଚେ ସୁଦୃଢ଼ ହେବ, ଏହି ବିଶ୍ୱାସ ମୋର ରହିଚି ।

ଏମିତିକା ବିଶ୍ୱାସ ଆପଣ ରଖିଥାନ୍ତୁ ଆଜ୍ଞା ! ହେଲେ ଏ ଲୋକଙ୍କର ଆପଣଙ୍କ ଉପରେ ବିଶ୍ୱାସ ରହିଲେ ତ ! ଆପଣ ଆହୁରି ବହୁ ଅସୁବିଧାରେ ପଡ଼ିଯିବାର ସମ୍ଭାବନା ଅଛି । ବିଜ୍ଞାନ କହୁଚି- ମୁଣ୍ଡ ହିଁ ଆମର ସବୁ ଅଙ୍ଗକୁ ପରିଚାଳନା କରେ । ପୁରୁଣା ଦଳର ଭାବ ଆପଣଙ୍କ ମୁଣ୍ଡରେ ଅଛି ବୋଲି ଜିଭଦେଇ ବାହାରିପଡୁଛି, ଯଦି ଏହା ହାତଦେଇ ବାହାରି ପଡ଼ିବ ତେବେ ବହୁ ଅସୁବିଧା ହୋଇଯିବ । ଟିକେ ସତର୍କତା ଅବଲମ୍ବନ କରୁଥିବେ । କାହିଁକି ସତର୍କ ରହିବେ, ଗୋଟେ ଛୋଟ ଘଟଣା କହିଲେ ଆପଣ ବୁଝିପାରିବେ ।

ଥରେ ଜଣେ ନେତା ମାତ୍ର ଗୋଟିଏ ଭୋଟରେ ହାରିଗଲେ । ସାମ୍ବାଦିକମାନେ ପ୍ରଶ୍ନ ପଚାରିବାରୁ ନେତା ତାଙ୍କ ସ୍ୱଭାବସୁଲଭ ଭଙ୍ଗୀରେ କହିଲେ- 'ଏହା ମୋର ପରାଜୟ ନୁହେଁ, ଗଣତନ୍ତ୍ରର ପରାଜୟ । ଏହା ବିରୋଧୀ ଦଳଙ୍କ ବିଜୟ ନୁହେଁ, ଧନବଳ ଓ ବାହୁବଳର ବିଜୟ ।

ଆଜ୍ଞା ! ମୁହଁରେ ସିନା ପରାଜୟ ପାଇଁ ସେ ଅନ୍ୟ ଦଳକୁ ଦୋଷ ଦେଇଦେଲେ, ହେଲେ ତାଙ୍କ ମନ ଜାଣୁଥିଲା- ପରାଜୟର କାରଣ ସେ ନିଜେ । ପୁରୁଣା ଅଭ୍ୟାସ ଯୋଗୁଁ ଜିଭ ଖସିଲା ଭଳି ତାଙ୍କ ହାତ ଖସିଯାଇଥିଲା ଆଉ ପୁରୁଣା ଦଳର ପୁରୁଣା ଚିହ୍ନରେ ଭୋଟଦେଇ ନିଜକୁ ନିଜେ ହରାଇ ଦେଇଥିଲେ ।



# ବାକି ଓ ବୋକା ପ୍ରସଙ୍ଗ

'ଛାଡ଼ଖାଇ ମୁବାରକ ।' 'ହାପି ଛାଡ଼ଖାଇ ।' ସିଂହବାବୁଙ୍କ ଏମିତି ଶୁଭେଚ୍ଛା ମୋତେ ଅଖାଡୁଆ ଲାଗିଲା; କିନ୍ତୁ ଏହି ଶୁଭେଚ୍ଛାରେ ମୁଁ ତାଙ୍କ ଇଙ୍ଗିତ ବୁଝିପାରିଲି । ତାଙ୍କ ଘରେ ଆଜି ଜୋରଦାରିଆ ମାଂସ ହେଇଚି ନିଶ୍ଚୟ । ତାଙ୍କୁ ଉତ୍ସାହିତ କରିବା ପାଇଁ ପଚାରିଦେଲି- ଆଜ୍ଞା ! ଆଜି ମାଂସ ହେଇଚି ବୋଧେ ? ସିଂହବାବୁ କହିଲେ- ଆଉ ଆମେ କ'ଣ ଆପଣଙ୍କ ଭଳି ଶାଗମୁଗ ଖାଇ ବଞ୍ଚିଚୁ ?

ମତେ କଥାଟା ବାଧିଲା । ଇଚ୍ଛା ହେଉଥିଲା ରୋକଠୋକ୍ ଜବାବ ଦେବାପାଇଁ । ହେଲେ ପାଟି ଖୋଲିଲେ ବନ୍ଧୁ ଭାଙ୍ଗିଯିବ । ନ ହେଲେ କହିଦେଇଥାନ୍ତି- ଆଜ୍ଞା, ଆମେ କା'ର ଉଧାର ନଶୁଝିବା ଯାଏ ଶାଗ ମୁଗ ଖାଉ ଥାଉ ! ଆପଣଙ୍କ ଭଳି ମାଂସ ଖାଉଚୁ ବୋଲି ଅନ୍ତତଃ ବାକି ଦେଇଥିବା ଲୋକ ଆଗରେ ଫୁଟାଣି ମାରୁନା ।

ଏବେ ଦିନେ ମୋ ସ୍ତ୍ରୀ ସିଂହବାବୁଙ୍କ ଘରକୁ ଯାଇଥିଲେ । ତାଙ୍କ ସ୍ତ୍ରୀ ମୋ ସ୍ତ୍ରୀଙ୍କୁ ନୂଆ ଗହଣା ଦେଖାଇଲେ । ସେ ଗହଣା ଦେଖି ମୋ ସ୍ତ୍ରୀ ରାଗିକରି ଉଚ୍ଛନ୍ନ । ମୁଁ କହିଲି- ହଇଓ, ତୁମେ ଏମିତି ଈର୍ଷାରେ ଜଳୁଚ କାହିଁକି ? ସ୍ତ୍ରୀ କହିଲେ- ଆମ ଦି'ହଜାର ଟଙ୍କା ଦି'ବର୍ଷ ହେଲା ଫେରେଇନି । ତା'ର ଛଇ ଦେଖ, ମୋତେ ଡାକି ଗହଣା ଦେଖଉଚି ।

ଆଜ୍ଞା ! ପରଟଙ୍କାକୁ ତକିଆ କରି ଶୋଇବା ପାଇଁ ଏମାନେ ଭଲ ପାଆନ୍ତି । ଟଙ୍କା ନେଲେ ଏମାନେ ଫେରାନ୍ତି ନାହିଁ । ଅଭାବରୁ ନୁହଁ ସ୍ୱଭାବରୁ ଏମାନେ ଏପରି କରିଥାନ୍ତି । ନୂଆ ଭାଗବତକାର ଯା'ଙ୍କୁ ଦେଖିଲେ ଲେଖନ୍ତେ-

ଯାହାର ଉଧାରୀ ସ୍ୱଭାବ
କେ ତା'କୁ ସୁଧାରି ପାରିବ ।

ଏଇ ସିଂହବାବୁ ଆଗରୁ ପୁଲିସ କଲୋନୀରୁ ବାକିରେ ମାଂସ ଆଣୁଥିଲେ । ଆଜି ସିଡ଼ିଏ ଯାଇ ମାଂସ ମାଗିଲେ । ଦୋକାନୀ କହିଲା- ଆଜ୍ଞା, ମୁଁ ଆପଣଙ୍କୁ ଚିହ୍ନିନି । ବାକି କେମିତି ଦେବି ? ସିଂହବାବୁ କହିଲେ- ସେଥିପାଇଁ ତ ମୁଁ ତମ ଦୋକାନକୁ ଆସିଥିଲି । ମତେ ଚିହ୍ନିଥିବା ଲୋକ କେହି ବାକି ଦିଅନ୍ତି ନାହିଁ ।

ବାକି ନେଲା ପରେ ଚିହ୍ନା ଲୋକଟା ଅଚିହ୍ନା ହୋଇଯାଏ । ନିତି ଦେଖାଦେଉଥିବା ଲୋକଟା ଅଦେଖା ହୋଇଯାଏ । ସେଥିପାଇଁ ବୋଧେ କୁହାଯାଇଛି 'ବୋକା ହିଁ ବାକି ଦିଏ ।' ଆଜ୍ଞା ! ମୁଁ ବି ବୋକା ସାଜିଚି । ଦାସବାବୁଙ୍କୁ ଥରେ କିଛି ଟଙ୍କା ଦେଇଥିଲି । ସେ ଥରୁଟିଏ ଟଙ୍କା ମାଗିଦେଲେ । ମୁଁ ସେ ପଇସା ପାଇବା ପାଇଁ ତାଙ୍କ ଘରକୁ ଶହେ ଥର ଗଲିଣି । ସକାଳେ ଗଲେ ପୁଅ କହୁଚି ବାପା ଶୋଇଛନ୍ତି । ଦଶଟାରେ ଗଲେ ବାପା ଅଫିସ ଗଲେଣି । ସଞ୍ଜରେ ଗଲେ ବାପା ଫେରିନାହାନ୍ତି । ରାତିରେ ଗଲେ ବାପା ଶୋଇପଡ଼ିଲେଣି । ଲୋକଟାର ଗାଡ଼ି ବଙ୍ଗଳା ସବୁ ଅଛି । ମୁଁ ସାଇକଲ ପେଲି ତାଙ୍କ ଘରକୁ ଚାରି ଥର ଯାଇ ଛିଡ଼ା ହେବାବେଳେ ଲୋକେ ଭାବୁଚନ୍ତି ମୁଁ ବୋଧେ ତାଙ୍କୁ ଧାର ମାଗିବାକୁ ଆସିଚି ।

ଆଜ୍ଞା, ଏ ବାକିଖିଆମାନେ ସବୁବେଳେ ସମସ୍ତଙ୍କୁ ଫାଙ୍କି ପାରନ୍ତି ନାହିଁ । ବେଳେବେଳେ ହୀନସ୍ତା ହୁଅନ୍ତି । ଆମର ଜଣେ କବିବନ୍ଧୁ ଏମିତିଆ ବାକି କଲେ । ସୁଝିବା ନାଁ ଧରିଲେ ନାହିଁ । ଦୋକାନୀ କହିଲା- ଦୋକାନ ସାମ୍ନାରେ ଯା ନାଁ ବଡ଼ ବଡ଼ ଅକ୍ଷରରେ ଲେଖିଦିଅ । ମୁଁ କହିଲି- ଦୋକାନୀ ଭାଇ, ଦୟାକରି ସେମିତି କରନ୍ତୁ ନାହିଁ । ବାଁକରା ଲୋକଟା ବଦନାମ ହୋଇଯିବ । ବାକି ବାଲିକାରେ ତା ନାଁ ଦେଖିଲେ ଲୋକେ ଖରାପ ଭାବିବେ । ଦୋକାନୀ କହିଲା- ତା ନାଁ କିଏ କେମିତି ଦେଖିବ । ନାଁ ଉପରେ ତା'ର ଜାମାପ୍ୟାଣ୍ଟ ଓହ୍ଲାଇ ଆମେ ଟଙ୍ଗାଇ ଦେବାନି ?

ଆଜ୍ଞା, କିଏ ଆମ ଜାମାପ୍ୟାଣ୍ଟ ଓହ୍ଲାଇବା ପୂର୍ବରୁ ଆମେ ବାକିଖିଆ ସ୍ୱଭାବଟା ଛାଡ଼ିଦେଲେ କେମିତି ହୁଅନ୍ତା !



# ଆଗତ ଚଢ଼େଇକୁ ବେସର ବଟା

**ବ**ଡ଼ କୋଠା । ବଡ଼ ପାଚିରି । ପାଚିରି ବାହାରେ ବ୍ୟସ୍ତ ବିବ୍ରତ ବାପା-ମାଆଙ୍କ ପଦଚାରଣ । ଦେଖିଲେ ଲାଗୁଚି-ଆମ ପିଲା ବୋଧେ ମେଡ଼ିକାଲର ଓଟି ଭିତରେ ଅଛନ୍ତି ।

କିନ୍ତୁ ଯେ ମେଡ଼ିକାଲ ନୁହଁ ଆଜ୍ଞା, ଏଇଟା ସ୍କୁଲ୍‌ଟାଏ । ସ୍କୁଲ ଭିତରେ ଆମ ପିଲା ପରୀକ୍ଷା ଦେଉଛନ୍ତି । ଏଇ ଘଟଣାକୁ ମୁଁ ଏଭଳି ଭାବରେ ଉପସ୍ଥାପନା କରିବାଟା ଆପଣଙ୍କୁ ଭଲ ଲାଗି ନପାରେ । ପିଲାର ପରୀକ୍ଷାବେଳେ ଦାୟିତ୍ୱବାନ୍ ବାପା ମା' ବ୍ୟସ୍ତ ହେବା ସ୍ୱାଭାବିକ, ହେଲେ ମାଟ୍ରିକ୍ କିମ୍ବା ପ୍ଲସ୍‌ଟୁ ପରୀକ୍ଷା ଚାଲିଲାବେଳେ ବାପା ମା'ଙ୍କ ବ୍ୟସ୍ତତା ଅସ୍ୱାଭାବିକ ଲାଗିନଥାନ୍ତା । ଦେଖନ୍ତୁ ମୋର କଅଁଳିଆ, ଛନଛନିଆ ତିନିବର୍ଷ ବୟସର ପିଲାଟା ପରୀକ୍ଷାସାରି କେମିତି ବ୍ୟତିବ୍ୟସ୍ତ ହୋଇ ଫେରୁଛି । ପିଲାର ବ୍ୟତିବ୍ୟସ୍ତତାର କାରଣ- ଗତ ରାତିରେ ଗରମ ହର୍ଲିକ୍ସ ପିଆଇ ରାତିସାରା ଚିଆଁଇ ପାଠ ପଢ଼େଇଥିବା ତା'ର ମାଆଙ୍କର ବ୍ୟଗ୍ରତା ।

ଏବେ ଏଇ ତିନିବର୍ଷ ବୟସକୁ ସାଧନାର ସମୟ ବୋଲି ବିଚାର କରାଯାଉଛି । ଏ ସମୟ ଧୂଳି ଖେଳର ସମୟ ନୁହେଁ କି ଜେଜେଙ୍କ ସାଙ୍ଗେ ଶୋଇ ଗପଶୁଣିବାର ବେଳ ନୁହେଁ । ଜେଜେ ଗପ କହିଲେ ରାମାୟଣ କି ମହାଭାରତର କଥା କହିବେ । ଆମ ପିଲାମାନଙ୍କୁ ଆମେ ରାମ କି କୃଷ୍ଣ କରିବାର ନାହିଁ । ସେ ଇଂଜିନିୟର୍ କିମ୍ବା ଡାକ୍ତର ହେବ । ସେଥିପାଇଁ ସେ ଗଣିତ ଆଉ ବିଜ୍ଞାନରେ ରୁଚି ରଖିବ । ଶିଶୁ ତା'ର ଶୈଶବକୁ ଭୁଲି କେବଳ ପରିଶ୍ରମ କରିବ । ସେ ସବୁବେଳେ

ମନେ ରଖିବ 'ୱାର୍କ ଇଜ୍ ୱର୍ସିପ୍' । କ୍ଲାସ୍ ୱାର୍କ, ହୋମ୍ ୱାର୍କ, ଟ୍ୟୁସନ ୱାର୍କ, ପ୍ରୋଜେକ୍ଟ ୱାର୍କ...... ୱାର୍କ ! ୱାର୍କ ! ୱାର୍କ ।

ଆମେ ଆମ କର୍ମବଳରେ ପିଲାଙ୍କୁ ବଡ଼ କରୁଛୁ । ଆମର ସମସ୍ତ ଶକ୍ତି ସାମର୍ଥ୍ୟ ପିଲାର ଭବିଷ୍ୟତ ଗଢ଼ିବାରେ ଲଗେଇ ଦେଇଚୁ । କେବଳ କର୍ମ ନୁହେଁ, ପିଲାର ଭାଗ୍ୟ ବି ଆମେ ଆମ ହାତ ମୁଠାରେ ରଖିଚୁ । ଆମ ବାପା ସିନା ଆମେ ଜନ୍ମ ହେଲାପରେ ଜାତକ ତିଆରି କଲେ ବୋଲି ଆଜି ଆମେ ନିଜ ଭାଗ୍ୟକୁ ନିନ୍ଦୁଛୁ; କିନ୍ତୁ ଆମ ପିଲାର ଜନ୍ମ ଆଗରୁ ନାହାକ ଡାକି, ଜାତକ ଲେଖି ଡାକ୍ତରକୁ ଟଙ୍କା ଦେଇ ଶୁଭବେଳା ଦେଖି ମାଆର ପେଟକାଟି ପିଲା ଜନ୍ମ କରିଚୁ । ଏବେ ଡାକ୍ତର କିମ୍ବା ଇଞ୍ଜିନିୟର ନହୋଇ ପିଲା ଯିବ କୁଆଡ଼େ ? ପିଲାକୁ ଆମେ ସ୍ୱପ୍ନ ଦେଖିବାକୁ ଦେବୁନାହିଁ । ସେ ଆମ ସ୍ୱପ୍ନ ହିଁ ସାକାର କରିବ ।

ପିଲାଜନ୍ମ ପୂର୍ବରୁ ଆମେ ତାର ବିଜ୍ଞାନ ଆଉ ବୈଷୟିକ ଜ୍ଞାନର ବିକାଶ କଥା ଚିନ୍ତା କରୁଛୁ । ମୋ ସ୍ତ୍ରୀ କଳାଛାତ୍ରୀ । ଓଡ଼ିଆ, ସଂସ୍କୃତ ପଢ଼ି ସେ ଜାଣିଛନ୍ତି ମାଆ ପେଟରେ ଥାଇ ବିଜ୍ଞାନରେ ଜ୍ଞାନ ହାସଲ କରୁବୋଲି ବାହାଘରର ତିନିମାସ ପରଠୁ ମୋ ସ୍ତ୍ରୀ ମୋ' ସହ ପ୍ରେମାଳାପ ଛାଡ଼ି ଫିଜିକ୍ସ, କେମେଷ୍ଟ୍ରି, ମେଥ୍ ଚର୍ଚ୍ଚା ହିଁ କରିଛନ୍ତି । ପିଲା ବିଜ୍ଞାନ ଓ ବୈଷୟିକ ଜ୍ଞାନରେ ରୁଚି ନରଖି ଯିବ କୁଆଡ଼େ ?

ଗୋଠ ମାତିଲେ ଖଣ୍ଡିଆହଡ଼ା ମାତିବା ନ୍ୟାୟରେ ସମସ୍ତେ କେବଳ ବିଜ୍ଞାନ ପଛରେ ଗୋଡ଼େଇଛନ୍ତି । ସମସ୍ତଙ୍କ ପାଖରେ ଗୋଟିଏ ସ୍ୱପ୍ନ - ପିଲା ତାଙ୍କର ଡାକ୍ତର କି ଇଞ୍ଜିନିୟର ହେବ ।

ଆମ ଘର ପାଖରେ ଗୋଟିଏ ନୂଆ ଦମ୍ପତି ଭଡ଼ା ରହନ୍ତି । ଦିନେ ସ୍ୱାମୀ ସ୍ତ୍ରୀଙ୍କ କଳି ହେଲା । କୁହାଯାଏ - କଳି ଘର ଭିତରେ ହେଇ ବାହାରକୁ ଶୁଭିଲେ ସେଇଟା ରେଡ଼ିଓ । କଳି ଘର ଭିତରୁ ବାହାରି ଦାଣ୍ଡରେ ପଡ଼ି ବାଟରେ ଗଡ଼ି ସଭିଏଁ ଦେଖିଲେ ସେଇଟା ଟିଭି ହୋଇଯାଏ । ସେଇ ଧାରାରେ ଏଇ ଦମ୍ପତ୍ତିଙ୍କ କଳି ଟିଭି ହୋଇଗଲା । ବହୁ ଲୋକ ଦେଖିବା ପାଇଁ ଜମା ହୋଇଗଲେ । ମୁଁ ବି

ସେଇଠି ଥିଲି, କଳିର କାରଣ ପଚାରିଲି, ସ୍ୱାମୀ କହିଲେ- ଦେଖନ୍ତୁ ଆଜ୍ଞା ! ମୋ ବାପା ଓଭରସିୟର ଥିଲେ । ମୋ ମଉସା ଇଞ୍ଜିନିୟର୍, ମୋ ଭାଇ ଇଞ୍ଜିନିୟର । ମୁଁ ଚାହୁଁଚି ଆମ ପିଲା ବି ଇଞ୍ଜିନିୟର ହେବ ।

ସ୍ତ୍ରୀ କହିଲେ - ଦେଖନ୍ତୁ ଆଜ୍ଞା । ମୋ ବୋଉ ନର୍ସ, ଭାଇ ଡାକ୍ତର, ଭଉଣୀ ବି ଡାକ୍ତର । ମୁଁ ଚାହୁଁଛି ଆମ ପିଲା ଡାକ୍ତର ହେବ ।

ସେଇ କଥା କଟାକଟି ପୁଣି ଚାଲିଲା ।

ସ୍ୱାମୀ କହୁଛନ୍ତି ଇଞ୍ଜିନିୟର ହେବ, ସ୍ତ୍ରୀ କହୁଛନ୍ତି ଡାକ୍ତର ହେବ । କଳି ମେଣ୍ଟେଇବା ପାଇଁ ମୁଁ ବଡ଼ ପାଟିରେ ଚିତ୍କାର କଲି - ରହନ୍ତୁ, ଆପଣ ମନେ ମନେ ନିଷ୍ପତ୍ତି ନିଅନ୍ତୁ ନାହିଁ । ପିଲାକୁ ଟିକିଏ ଡାକନ୍ତୁ । ଦି' ଜଣ ଖାଲି ମୋ ମୁହଁକୁ ବଲବଲ ହୋଇ ଚାହିଁଲେ । ମୁଁ ପୁଣି ସ୍ୱାମୀଙ୍କ ମୁହଁକୁ ଚାହିଁ କହିଲି - ପିଲାକୁ ଡାକୁ ନାହାନ୍ତି ?

ସ୍ୱାମୀ କିଛି ସମୟ ଚୁପ୍ ରହି ଉତ୍ତର ଦେଲେ - ଆମର ଏ ପର୍ଯ୍ୟନ୍ତ ପିଲା ଜନ୍ମ ହୋଇନାହିଁ ।



# କହି ଦେଉଥାଏ ପରକୁ

ଆମ ସହରରେ, କଟକରେ, ରାଜଧାନୀରେ ଛକମାନଙ୍କରେ ବଡ଼ ବଡ଼ ମୂର୍ତ୍ତିମାନେ ଠିଆ ହୋଇଥାନ୍ତି । ମୁଁ ବୁଝିପାରେ ନାହିଁ, ପ୍ରାୟତଃ ମୂର୍ତ୍ତିମାନେ ଗୋଟିଏ ସ୍ଥିତିରେ ଥା'ନ୍ତି । ମୂର୍ତ୍ତିମାନେ କାହିଁକି ହାତକୁ ଲମ୍ବେଇ ଆଙ୍ଗୁଳି ଦେଖେଇ ଥାନ୍ତି ! ପଚାରିଲେ ଜ୍ଞାନୀଲୋକେ ବୁଝେଇ ଦିଅନ୍ତି - 'ଏମାନେ ଏ ଜାତିର ମହାପୁରୁଷ, ଜାତିର ପଥ ପ୍ରଦର୍ଶକ । ଆଙ୍ଗୁଳି ଦେଖେଇ ଆମକୁ ବାଟ ଦେଖଉଛନ୍ତି ।' ଆମ ଲୋକେ କିନ୍ତୁ ଓଲଟା ବୁଝନ୍ତି । ଭାବନ୍ତି- ପରକୁ ଆଙ୍ଗୁଳି ଦେଖେଇବା ଆମ ଜାତୀୟ ଚରିତ୍ର ।

ଆମେ ଜାଣୁ, ଅନ୍ୟକୁ ଗୋଟାଏ ଆଙ୍ଗୁଳି ଦେଖେଇଲାବେଳେ ବାକି ଆଙ୍ଗୁଳିମାନେ ଆମ ଆଡ଼କୁ ମୁହେଁଇକି ଥାଆନ୍ତି । ଆମ ନିଜର ଅନେକ ଦୋଷ; ହେଲେ ପର ଦୋଷ ଟିକିଏ ଦେଖିଲେ ଆମ ପାଟି ଖଜବଜ ହୁଏ । ଦୁନିଆଁରେ ବହୁ ପ୍ରକାରର ଟାଇମ୍‌ପାସ୍ ଅଛି; କିନ୍ତୁ ପରନିନ୍ଦା, ପରଚର୍ଚ୍ଚା, ପରଛିଦ୍ର, ପରଅହଙ୍କାରରେ ଯୋଉ ଆନନ୍ଦ ଥାଏ ସେ ଆନନ୍ଦ ଅନ୍ୟ କୋଉଥିରେ ନଥାଏ ।

'ଆପେ ଜୀଇଁଲେ ବାପାର ନାଆଁ' ଶୀର୍ଷକ ଅଜ୍ଞାନ ବିଚାର ସ୍ତମ୍ଭରେ ମୁଁ ଲେଖିଥିଲି - ଆମ ସାହିରେ ପଶୁ ପଶୁ ଜଣେ ଭଦ୍ରଲୋକଙ୍କ ଘର ଅଛି । ଯିଏ ନିଜ ଘରକୁ ଧୋଇ ଧାଇ ଚିକ୍କଣ ରଖି ରାସ୍ତାକୁ ମଇଳା ପାଣି ଛାଡ଼ନ୍ତି । ୟା'କୁ ପଢ଼ି ଆମ ସାହିର ଆଉଜଣେ ବାସିନ୍ଦା ବଡ଼ ଉତ୍ସାହିତ ହେଇ କହିଲେ, 'ଜ୍ଞାନବାବୁ ! ଆପଣ ଠିକ୍ କଥାଟାଏ ଲେଖିଛନ୍ତି ।' ମୁଁ କହିଲି- ଆଉ ଗୋଟେ ଠିକ୍ କଥା ଲେଖିବାକୁ ମୁଁ ଭୁଲିଯାଇଚି । ଆପଣ ଘର ଆଗରେ ଦି'ବର୍ଷ ହେଲା ବାଲି ଗଦେଇଛନ୍ତି । ଏଇ ବାଲିରେ ସ୍ଲିପ୍ କରି ବହୁ ଲୋକ ଗାଡ଼ିରୁ ପଡ଼ିଲେଣି । ଆଜ୍ଞା ! ପରକୁ ଲୋକ କହିଦିଏ, ନିଜ ବେଳକୁ ବୁଦ୍ଧି ଦେଖାଯାଏ ନାହିଁ । ବେଳେ ବେଳେ ଏମାନଙ୍କୁ ବୁଦ୍ଧି ଦେଖେଇଦେବା ଦର୍କାର ।

ଅଫିସ୍‌ରେ କିଛି ବନ୍ଧୁ ଥା'ନ୍ତି । ଯେଉଁମାନେ କେବଳ ଅନ୍ୟର ଭୁଲ ଦେଖନ୍ତି । ଅନ୍ୟର ଭୁଲ୍‌କୁ ନେଇ ଯେତିକି ଚର୍ଚ୍ଚା ଚାଲେ, ତା'ର ଅଧା ସମୟ ଯଦି ଏମାନେ

କାମ କରନ୍ତେ ଏ ଦେଶଟା ସୁନା ହେଇଯା'ନ୍ତା । ଏମିତି ଭୁଲ ଦେଖୁଥିବା ବନ୍ଧୁ ବାହାଦୁରୀ ମାରି କହନ୍ତି ସେ ସେ ନିଜେ କିଛି ଭୁଲ କରନ୍ତି ନାହିଁ । ଏମିତିଆ ଜଣେ ବନ୍ଧୁଙ୍କୁ ମୁଁ ଥରେ ପଚାରିଲି - ଭାଇ ! ଆପଣ କେବେ ମିଛ କହିନାହାନ୍ତି? ବନ୍ଧୁ ଉତ୍ତରରେ କହିଲେ- ମର୍ତ୍ତ୍ୟରେ ମିଛ ନକହି କେହି ମଣିଷ ନାହାନ୍ତି । ମୁଁ କହିଲି - ଚାଲ, ମୁଁ ମିଛ କହି ନଥିବା ମଣିଷ ଦେଖେଇ ଦେବି । ବସଷ୍ଟାଣ୍ଡ ପାଖ ଗୋଟେ ସାଇକଲ ମେକାନିକ୍ ପାଖକୁ ନେଇ ବନ୍ଧୁଙ୍କୁ ଦେଖେଇ ଦେଲି । ବନ୍ଧୁଙ୍କୁ କହିଲି ଏ ମେକାନିକ୍ ସାଙ୍ଗେ କଥାହେଲେ ଆପଣ ଜାଣିପାରିବେ ଯେ ସେ କେବେ ମିଛ କହିନି । ବନ୍ଧୁ ତାକୁ ପଚାରିଲେ - ହଇଓ ତମେ କେବେ ମିଛ କହିନ ? ମେକାନିକ୍ ନୀରବ । ଏଥର ବନ୍ଧୁଙ୍କୁ ବୁଝେଇଦେଲି- ଏ ଲୋକଟା କଥା ହିଁ କହିପାରେ ନାହିଁ, ମିଛ କହିବ କୁଆଡୁ? ସେମିତି ଆପଣ କାମ ହିଁ କରନ୍ତି ନାହିଁ; ଭୁଲ କରିବେ କୁଆଡୁ ।

ଆଜ୍ଞା ! ଆମ୍ଭେ ନିଜେ ପାନ ଚୋବଉଥିଲାବେଳେ ଅନ୍ୟକୁ ପାନ ଖାଇବା ପାଇଁ ମନା କରିବା କେମିତି? ଅନ୍ତତଃ ପାଟିଟାକୁ କୁଳି କରିଦେଇ କଥାଟା କହିବା ଠିକ୍ ହେବ ।

ଗତକାଲି ମୋ ପୁଅ ଗାଡ଼ି ଚଲେଇ ଯାଉଥିଲା । ରାସ୍ତାରେ ପଡ଼ିଗଲା । ଏ ଦୃଶ୍ୟକୁ ଦେଖିଥିବା ଜଣେ ବନ୍ଧୁ ମତେ ଆସି କହିଲେ- ଆଜ୍ଞା ! ପୁଅକୁ କେମିତି ଗାଡ଼ି ଦେଇ ଦେଉଛନ୍ତି ? ମୁଁ ହସିଦେଲି । ମୁଁ ଜାଣିଛି ତାଙ୍କର ବି ଦି'ପୁଅ । ବଡ଼ ପୁଅ ଗାଡ଼ି ଚଲଉଚି, ସାନ ପୁଅ ଏ ବର୍ଷ ମେଟ୍ରିକ୍ ଦବ । ଆଜିକାଲି ମେଟ୍ରିକ୍‌ପରେ ପିଲା ଗାଡ଼ି ଚଲେଇବା ପାଇଁ ହମ ହମ । ବନ୍ଧୁ ମୋ' ହସରୁ ବୋଧେ ନିଜ କଥା ବୁଝିଗଲେ । କଥାକୁ ବଦଳେଇ କହିଲେ - ନାଇଁ ଯେ, ଭଲକରି ଗାଡ଼ି ନଶିଖିଲାଯାଏ ତାକୁ ଗାଡ଼ି ଦିଅନ୍ତୁ ନାହିଁ ।

ବନ୍ଧୁଙ୍କୁ ମୁଁ ପଚାରିଲି- ଆଜ୍ଞା ! ଆପଣ ପହଁରା ଶିଖିଛନ୍ତି ? ବନ୍ଧୁ ମୁଣ୍ଡ ଟୁଙ୍ଗାରିଲେ । ପୁଣି ପଚାରିଲି- ପହଁରା ଶିଖିଲାବେଳେ ପାଣି ପିଇ ପକେଇଥିବେ । ବନ୍ଧୁ ହଁ ମାରିଲେ । ଏଥର ମୁଁ କହିଲି - ଭଲକରି ପହଁରା ନଶିଖିବା ଯାଏଁ ଆପଣ ପାଣିରେ ପଶୁଥିଲେ କେମିତି ??



# ନେତା ଖାଦ୍ୟ ବନାମ ମଣିଷ ଖାଦ୍ୟ

ଅନ୍ନାଦ୍ ଭବନ୍ତି ଭୂତାନି... । ଅନ୍ନରୁ ହିଁ ମଣିଷ ବଞ୍ଚିରହେ । ଖାଦ୍ୟ ଶରୀରକୁ ପୁଷ୍ଟ କରେ । କିନ୍ତୁ ସାହିତ୍ୟ, ସଙ୍ଗୀତ ଓ ରାଜନୀତିକୁ ଖାଦ୍ୟ ପୁଷ୍ଟ କରିବାର କଥା କେବେ ଜାଣିଛନ୍ତି କି ? ଆଜ୍ଞା ହଁ । କ୍ରମଶଃ ଖାଦ୍ୟ ସାମଗ୍ରୀଗୁଡ଼ିକ ଶରୀର ପାଇଁ କମ୍ ଏସବୁ ପାଇଁ ଅଧିକ ଉପଯୋଗୀ ହୋଇଚନ୍ତି ।

'ଏଇ ଜହ୍ନ ଏଇ ରାତି', 'ହେ ଫଗୁଣ ତମେ...', 'ଏଇ ଯେ ବନଲତା ପାହାଡ଼' ଆଦି ଗୀତ ଆମେ ଶୁଣୁଥିଲୁ । ଆଗରୁ ଏ ଜହ୍ନ, ଫଗୁଣ, ବନଲତାକୁ ନେଇ ଏ ସାହିତ୍ୟ ଚାଲୁଥିଲା । ପ୍ରେୟସୀକୁ ଜହ୍ନ, ଫଗୁଣ ଦେଖେଇ ଭୁଲେଇବା ଆଉ ସମ୍ଭବ ହେଲା ନାହିଁ । ମଣିଷ ଅଧିକ ବସ୍ତୁବାଦୀ ହୋଇଗଲା । ପ୍ରିୟା ପାଇଁ ତାଜମହଲ ଗଢ଼ିବା ଦରକାର ପଡ଼ିଲା । ତାକୁ ବିଭିନ୍ନ ଜାଗା ବୁଲେଇବା ଆବଶ୍ୟକ ପଡ଼ିଲା । ତା'ପରେ ଗୀତ ଲେଖା ହେଲା-ତତେ ନେଇଯିବି ସମ୍ବଲପୁର୍/ଆମ ବାହାଘର ସରୁ । ସେଥିରେ ବି ମନ ବୁଝିଲାନି । ଏବେ ଖାଦ୍ୟ ସାମଗ୍ରୀକୁ ମୁଖ୍ୟ ଆୟୁଧ କରାଗଲା ସଙ୍ଗୀତରେ -'ତୁ କୋଉ ଚାଉଳ ଖାଉଚୁ, ଏତେ ସୁନ୍ଦର ହେଇଚୁ', 'କାଜୁ ଖିସ୍‌ମିସ୍ ଖାଉଚୁ....', 'ଏ ଗଉରା କ'ଣ ଖାଉଚୁ/ ମାଉଁସ...' ଇତ୍ୟାଦି ।

ରାଜନୀତିର ଉପାଦାନ ବି ସେହିଭଳି ବଦଳି ଚାଲିଲା । ଆଗେ ଗ୍ୟାସ୍ ଦୁର୍ଘଟଣା, ମନ୍ଦିର ଘଟଣା, ମଣ୍ଡଳ ଗଣ୍ଡଗୋଳକୁ ନେଇ ରାଜନୀତି ଚାଲୁଥିଲା । କ୍ରମଶଃ ଲୋକେ ଏଥିରୁ ବିମୁଖ ହୋଇଗଲେ । ତା'ପରେ ଅଞ୍ଜନା ବଳାତ୍କାର, ଗଞ୍ଜନା ଅତ୍ୟାଚାର, ବାସନ୍ତୀ ଅପମାନ ଭଳି ଲୋମ ହର୍ଷକ ବିଷୟକୁ ରାଜନୀତିରେ ଆଧାର କରାଗଲା । ଜନତା ଏଥିରେ ବି ବୀତସ୍ପୃହ ହୋଇଉଠିଲେ ଏବେ ରାଜନୀତିରେ ଆଧାର ବନିଲା ଖାଦ୍ୟସାମଗ୍ରୀ । କେବେ ଚାଉଳକୁ ନେଇ ରାଜନୀତି ତ କେବେ ପିଆଜକୁ ନେଇ ରାଜନୀତି । ସମ୍ପ୍ରତି ଚିନିକୁ ନେଇ ବେଶ୍ ରାଜନୀତି ଚାଲିଲା । ତା'ଠୁ ଆହୁରି ଜମିଗଲା ବାଇଗଣ ରାଜନୀତି ।

ଯା'ହେଉ ଏ ରାଜନୀତିକୁ ଆମେ ସ୍ୱାଗତ କରୁଚୁ । ଏ ରାଜନୀତି ଯୋଗୁ ତ ଏ ଦେଶର ନେତାମାନେ ନିଜର ଖାଦ୍ୟସାମଗ୍ରୀକୁ ଭୁଲି ସାଧାରଣ ଜନତାଙ୍କ ଖାଦ୍ୟ ସମ୍ପର୍କରେ ଗବେଷଣା ଆରମ୍ଭ କରିଦେଇଚନ୍ତି । ବୋଫର୍ସ, ଖଣି, କଫିନ୍, ଟଙ୍କା ଭଳି ନିଜ ଖାଦ୍ୟକୁ ଛାଡ଼ି ଏମାନେ ଏବେ ଆଳୁ, ପିଆଜ, ଚିନି, ବାଇଗଣ ଭଳି ମଣିଷ ଖାଦ୍ୟକୁ ନେଇ ରାଜନୀତି କରିବା ଆରମ୍ଭ କରିଦେଇଚନ୍ତି । ବୈଜ୍ଞାନିକମାନେ କହୁଥିଲେ-ଜୀବରସ ଭିତରେ ଶର୍କରା ବି ଏକ ଜୀବରସ ଯାହା ଚିନିରୁ ସିଧାସଳଖ ମିଳିଥାଏ । ଡାଏବେଟିସ ହେବା ପରେ ବେଶି ଚିନି ଖାଇବା ଅନୁଚିତ; କିନ୍ତୁ ଏବେ ସେ ବିଭାଗୀୟ ମନ୍ତ୍ରୀ କହୁଚନ୍ତି-ଚିନି ଖାଇଲେ ମଣିଷର ଅଦ୍ଭୁତ କ୍ଷତି ହୋଇଥାଏ । ଚିନି ଖାଇବା ଦ୍ୱାରା ଡାଏବେଟିସ୍ ଭଳି ରୋଗ ହୁଏ । ଚିନି ନ ଖାଇଲେ ମଣିଷର କିଛି କ୍ଷତି ହେବନି । ଚିନି ନଖାଇ କେହି କେବେ ମରିନାହିଁ । ଏଭଳି ଏକ ନୂଆ ଗବେଷଣା ପାଇଁ ବିଜ୍ଞାନର ଏକ ନବଉନ୍ମେଷ ନିମନ୍ତେ ଆମ୍ଭେ ରାଜନୀତିଆ ଲୋକଙ୍କୁ ସାଧୁବାଦ ନଜଣାଇବା କେମିତି ?

ଆମ୍ଭେ ଆଜି ପର୍ଯ୍ୟନ୍ତ ଶୁଣି ଆସିଥିଲୁ ଅତ୍ୟଧିକ ରାସାୟନିକ ସାର ପ୍ରୟୋଗ ଦ୍ୱାରା ଯେଉଁ ଖାଦ୍ୟ ଦ୍ରବ୍ୟ ଆମକୁ ମିଳିଥାଏ ତାହାର ଦ୍ରବ୍ୟଗୁଣ ନଷ୍ଟ ହୋଇଥାଏ । ଗୋବର ଓ କମ୍ପୋଷ୍ଟର ପ୍ରୟୋଗରେ ମଧ୍ୟ ଅଧିକ ପନିପରିବା ମିଳିପାରିବ ଏବଂ ଦ୍ରବ୍ୟଗୁଣ କମିବ ନାହିଁ । ଏବେ ରାସାୟନିକ ସାରଠୁ ବି ମାରାତ୍ମକ କୀଟମାନଙ୍କ

ଜିନ୍ ପ୍ରୟୋଗ ଫଳୁଚି ବିଟି ବାଇଗଣ ନାଁରେ । ଏହା ପ୍ରାଣନାଶକ ହେବାର ବି ସମ୍ଭାବନା ଅଛି । କିନ୍ତୁ ବାଇଗଣ ରାଜନୀତିଆଙ୍କଠୁ ବଳି ବଡ଼ ବୈଜ୍ଞାନିକ କେହି ନାହାନ୍ତି । ସବୁ ରାଜ୍ୟ ବୁଲିବୁଲି ନେତା ଏହି ବିଟି ବାଇଗଣ ସପକ୍ଷରେ ମତ ଦେଉଥିଲେ । ଏହାକୁ ଚାଷ କଲେ ଚାଷୀ ରାତାରାତି ଧନୀ ପାଲଟିଯିବ ବୋଲି କହୁଥିଲେ, କାରଣ ସେ ବାଇଗଣରେ ପୋକ ଲାଗିବ ନାହିଁ । ଏବେ ସେହି ନେତା କହୁଚନ୍ତି- ଏ ବାଇଗଣ ଯୋଉ ବିପଦର କାରଣ ବୋଲି କୁହାଯାଉଚି ସେ ସମ୍ପର୍କରେ ବିଶଦ ଗବେଷଣା କରାଯିବ । ବର୍ତ୍ତମାନ ପାଇଁ ବାଇଗଣ ଚାଷକୁ ନିଷିଦ୍ଧ କରାଯାଇଛି ।

ଜଣେ ବନ୍ଧୁଙ୍କୁ ପଚାରିଲି- 'ଭାଇ ! ଯଦି ଗବେଷଣା କରିବାର ଥିଲା, ଏତେ ଚର୍ଚ୍ଚା କାହିଁକି ଚାଲିଥିଲା ?' ଭାଇ କହିଲେ- 'ଉତ୍ତର ଅତି ସରଳ । ଆମେ ତାଙ୍କ ଖାଦ୍ୟ-ବୋଫର୍ସ, ଖଣି, କଫିନ୍ ଟଙ୍କା ଉପରେ ଆଖି ପକେଇଲେ । ସେଥିରୁ ଦୃଷ୍ଟି ହଟାଇବା ପାଇଁ ସେମାନେ ମଣିଷ ଖାଦ୍ୟ ଉପରେ ଚର୍ଚ୍ଚା ଜାରି ରଖିଲେ ।



# ଜୀବନଟା ସିନେମା ନୁହଁ

**ରା**ଧାକ୍ରିଷ୍ଣନ୍‌ଙ୍କଠାରୁ କାଲାମ ଯାଏଁ, ନେହେରୁଙ୍କଠାରୁ ବାଜପେୟୀଙ୍କ ଯାଏଁ ଏ ଦେଶର ମହାନାୟକମାନେ ଯୁବପିଢ଼ିର ଯେତିକି ଆଦର୍ଶ ହୋଇନାହାନ୍ତି ଅମିତାଭ ବଚ୍ଚନଠାରୁ ଶାହାରୁଖ୍‌ଙ୍କ ଯାଏଁ ସମସ୍ତ ଚଳଚ୍ଚିତ୍ର ନାୟକମାନେ ଯେ ଏମାନଙ୍କର ଶ୍ରେଷ୍ଠ ଆଦର୍ଶ ଏ କଥା କାହାକୁ ବୁଝାଇବା ଦର୍କାର ପଡୁନାହିଁ । ଏହାର କାରଣ ହେଉଛି ଆଜିର ଯୁବପିଢ଼ି ସିନେମା ଭିତରେ ହିଁ ନିଜ ଜୀବନକୁ ଦେଖୁଛନ୍ତି ଏବଂ ଜୀବନ ଭିତରେ ସିନେମାକୁ ଦେଖୁଛନ୍ତି । ବାସ୍ତବତାଠାରୁ ସିନେମା ଯେ କେତେ ଅଲଗା ଏମାନଙ୍କୁ କେମିତି ବୁଝାଯାଇପାରିବ ।

ମା'-ପୁଅ କୋଡ଼ିଏ ବର୍ଷତଳୁ ଅଲଗା ହୋଇଯାଇଥିଲେ । ବହୁ ସିନେମାର କାହାଣୀ ପରି ମା'-ପୁଅ ସାମ୍ନାସାମ୍ନି ହୋଇ ମଧ୍ୟ ପରସ୍ପରକୁ ଚିହ୍ନି ପାରୁନଥିଲେ । ଇତି ମଧ୍ୟରେ କାମ କଲାବେଳେ ମା'ର ଆକସ୍ମିକ ଦୁର୍ଘଟଣା ଘଟୁଚି ଆଉ ହସପିଟାଲରେ ଭର୍ତ୍ତି ହେଉଚି । ପୁଅଟି ଆଉ ଏକ ଖଟିଆରେ ଶୋଇ ମା'କୁ ରକ୍ତ ଦେଉଚି । ରକ୍ତଗୁଡ଼ା ସିଧାସଳଖ ନଳୀ ଦେଇ ମା' ଦେହକୁ ଯାଉଚି । ସେଇଠି ହିଁ ରକ୍ତର ସମାନତା ଦେଖି ମା'-ପୁଅ ପରସ୍ପରକୁ ଚିହ୍ନି ପାରୁଚନ୍ତି । ଭାଇ ! ପଚାରି ଆସିଲେ କେଉଁ ଡାକ୍ତରଙ୍କୁ- ବାସ୍ତବ ଜୀବନରେ ଏଭଳି ରକ୍ତର ଆଦାନପ୍ରଦାନ କୋଉଠି ସେ କେବେ ଦେଖିଚନ୍ତି କି ?

ନାୟିକାର ଘର ଖୋଜି ଖୋଜି ନାୟକ ଏକ ଅଟୋରିକ୍ସାରେ ଆସି ଘର ପାଖରେ ପହଞ୍ଚିଛି । ଅଟୋରୁ ଓହ୍ଲାଇ ପକେଟ୍‌ରେ ହାତ ପୁରାଇ ଯାହା ଟଙ୍କା ବାହାରିଚି ଅଟୋ ଡ୍ରାଇଭର ହାତକୁ ବଢ଼ାଇ ଦେଉଚି । ଅଟୋ ଡ୍ରାଇଭର ବି ତାକୁ

ନଦେଖି ପକେଟରେ ପୁରାଉଚି । ମନେ ପକାନ୍ତୁ ତ ଭାଇ, ଯେତେ ଜରୁରୀ କାମ ଥାଉ ନା କାହିଁକି ଅଟୋବାଲାକୁ କେବେ ଆପଣ ନଗଣି ଟଙ୍କା ଦେଇଚନ୍ତି ନା ସେ କେବେ ନଗଣି ରଖିଚି ? କେବଳ ଏହା ସିନେମାରେ ହିଁ ଘଟିଥାଏ । ଆମ ପକେଟରେ ସର୍ବମୋଟ ୧୦ଟଙ୍କା ଥିଲେ ବି ଅଟୋବାଲାକୁ ଦେଲାବେଳେ ଆମେ ଦୁଇଥର ଆଙ୍ଗୁଳି ଘଷିକି ଦେଖୁ କାଳେ ଆଉ ଗୋଟେ ଟଙ୍କା ଲାଖିଯାଇଚି କି ? ଅଟୋବାଲା ବି ତିନିଥର ଆଲୁଅରେ ଦେଖେ କୋଉ ଟଙ୍କା କଣା କି ଫଟା ଅଛି କି ।

ସିନେମାରେ ନାୟିକାକୁ ଅତ୍ୟାଚାର ହେଉଚି । ନାୟକ ପାଖରେ ଖବର ପହଞ୍ଚିବା ମାତ୍ରେ ଦ୍ରୁତ ଗତିରେ କାର୍ ଚଲାଇ ସେ ଛୁଟୁଚି । ସ୍ପିଡ୍‌ରେ କାର ଚଲାଇଲାବେଳେ ଷ୍ଟିୟରିଂକୁ ବହୁ ଜୋରରେ ଏପାଖ ସେପାଖ କରିବାର ଦୃଶ୍ୟ ଦେଖାଯାଉଚି । ଭାଇ ! ଯେଉଁମାନେ କାର ଚଳାଇ ଜାଣିଚନ୍ତି, କହନ୍ତୁ ତ ଗାଡ଼ି ସ୍ପିଡ୍‌ରେ ଥିବାବେଳେ ଷ୍ଟିୟରିଂକୁ ଏମିତି ଏପାଖ ସେପାଖ କରାଯାଏ କି ? ନିଜର ଧାରଣା ନଥିଲେ କୋଉ ଡ୍ରାଇଭରକୁ ଯାଇ ପଚାରନ୍ତୁ, ସେ କହିବ- ସ୍ପିଡ୍ ଗାଡ଼ିର ଷ୍ଟିୟରିଂ ଏମିତି ବୁଲେଇଲେ ରିଂରୋଡ୍‌ରୁ ଗଡ଼ିଯାଇ ଗାଡ଼ି ମହାନଦୀରେ ପଡ଼ିବ ।

ଆଉ ଏକ ସିନେମାରେ ଉଚ୍ଚଶିକ୍ଷିତ ହେଇ ମଧ୍ୟ ନାୟକ ଚାଷକରି ଗାଁର ଉନ୍ନତି କରିବାକୁ ଚାହୁଁଚି । ନାୟିକାର ବାପା- ମା' ନାୟକକୁ ଅଯୋଗ୍ୟ କହି ଝିଅ ଦେବାକୁ ରାଜି ହେଉନାହାନ୍ତି । ନାୟକ ନାୟିକାକୁ ଦେଖାକରି କହୁଚି-'ମୁଁ ସହରକୁ ଯାଉଚି, ଜୀବନରେ କିଛି ନକଲା ଯାଏ ଆଉ ଗାଁକୁ ଫେରିବି ନାହିଁ ।' ସହରରେ ଯାଇ ସେ ଚାକିରି ଖୋଜୁଚି । ଚାକିରି ନପାଇ ଅଟୋ ଚଲାଉଚି । ଅଟୋ ଚାଳକ ସଂଘର ନେତା ହୋଇଚି ଏବଂ ଶେଷରେ ଅଟୋଚାଳକଙ୍କ ସମର୍ଥନରେ ନିର୍ବାଚନ ଲଢ଼ି ରାଜ୍ୟର ମୁଖ୍ୟମନ୍ତ୍ରୀ ହେଉଚି । ଭାଇ ! ପଚାରି ଆସନ୍ତୁ ତ ଏ ରାଜ୍ୟର ରାଜନୀତି ବିଶାରଦମାନଙ୍କୁ - ଏଭଳି ଅଟୋଚାଳକଙ୍କ ସମର୍ଥନରେ କେଇଜଣ ରାଜ୍ୟର ମୁଖ୍ୟମନ୍ତ୍ରୀ ହୋଇଚନ୍ତି ?

ଏଭଳି ବାସ୍ତବତାଠାରୁ ଦୂରରେ ଥିବା ବହୁ ସିନେମା ଆମେ ଦେଖୁ । ଝିଅଟାଏ ତା' ବାପା, ମାଆ, ଭାଇ ସହିତ ବସି ଏମିତି ଏକ ସିନେମା ଦେଖୁଥିଲା । ସିନେମାର

ନାୟିକାଟି ସମ୍ଭ୍ରାନ୍ତଘରର । ସେ ଭଲପାଇ ବସିଚି ନୀଚ କୁଳର ଗରିବ ପୁଅକୁ । ନାୟିକାର ଭାଇ ଏ ପ୍ରେମକୁ ବିରୋଧ କରୁଚି । ସିନେମାର ଉପସ୍ଥାପନା ଶୈଳୀରେ ନାୟିକାର ଭାଇକୁ ଭିଲେନ୍ ଆଖ୍ୟା ଦିଆଯାଇଚି । ପରିଶେଷରେ ନୀଚ କୁଳର ଗରିବ ପୁଅଟି ନାୟିକାକୁ ବାହା ହେଉଚି ଏବଂ 'ଭିଲେନ୍ ଭାଇ'ଟି ମାଡ଼ ଖାଉଚି । ସିନେମା ଦେଖୁଥିବା ଝିଅର ବାପା-ମାଆ ଏ ଦୃଶ୍ୟ ଦେଖି ଖୁସି ହେଉଚନ୍ତି ଏବଂ ଭାଇଟା ଚିତ୍କାର କରୁଚି- ମାର ଆଉ ଜୋରରେ ମାର ।

ଏଇଠି ସିନେମା ଦେଖୁଥିବା ଝିଅଟାକୁ ମୁଁ କହିବି, 'ମାମାଲୋ ! ବାପା, ମାଆ, ଭାଇ ଏ ସିନେମା ଦେଖି ଉତ୍ସାହିତ ହେଉଚନ୍ତି ହେଉଥାନ୍ତୁ, ତୁ କେବେ ଉତ୍ସାହିତ ହେବୁନି କି ଏମିତି ଭୁଲ କରିବୁନି । କାଲି ତୁ କୁଳମର୍ଯ୍ୟାଦା ଭୁଲି ଯଦି କୋଉ ନୀଚ କୁଳର ପୁଅକୁ ଭଲ ପାଇ ବସିବୁ, ଏ ବାପା-ମାଆ ତତେ ବିରୋଧ କରିବେ, ଏ ଭାଇ ବି ଭିଲେନ୍ ସାଜିବ । ସିନେମାରେ ଜୀବନର କଥା ଥାଇପାରେ ହେଲେ ଜୀବନଟା ସିନେମା ନୁହଁ ।



# ମୁଁ ଏକା ବିଭୁତି ବାକି ପାଉଁଶ

**ସା**ହିରୁ ମେଢ଼ ବାହାରିଲେ ଗଜରା ପକେଇ ମୁରବି ସାଜି ସେ ଆଗେ ଆଗେ ଚାଲନ୍ତି । ପୂଜାଟାଏ ହେଲେ ସେ କର୍ତ୍ତା ସାଜନ୍ତି, ସଭାଟିଏ ହେଲେ ସଭାପତି ହୁଅନ୍ତି । କୋଉ କବିତା ଆସରକୁ ଗଲେ ସେ ସଂଯୋଜକ ହୁଅନ୍ତି । ଗୋଟିଏ ବାକ୍ୟରେ କହିବାକୁ ଗଲେ - ସେ ସର୍ବଦା ମୁଖ୍ୟ ଆକର୍ଷଣ ହେଇ ରହିବାକୁ ଚାହାନ୍ତି ।

ଓଡ଼ିଶାର ଜଣେ ପ୍ରାତଃସ୍ମରଣୀୟ କବିଙ୍କର ଦେହାନ୍ତ ହୋଇଗଲା । ତାଙ୍କ ଶବଯାତ୍ରାରେ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଗହଣରେ ଆମ୍ଭ ଭଳି ଅବଶିଷ୍ଟ ଲୋକ ବି ଯାଇଥିଲୁ । ଶବଯାତ୍ରାରେ ସେଇ (ମୁଖ୍ୟ ଆକର୍ଷଣ ହେବାକୁ ସର୍ବଦା ଚାହୁଁଥିବା) ବ୍ୟକ୍ତିଙ୍କୁ ଆମ୍ଭେ ବିରସ ମୁଖରେ ଦର୍ଶନ କଲୁଁ । ବିରସ ମୁଖର କାରଣ ପଚାରନ୍ତେ ଜଣେ ବନ୍ଧୁ ପରିହାସ କରି କହିଲେ - ଆଜିର ଏ ଶବଯାତ୍ରାର ମୁଖ୍ୟ ଆକର୍ଷଣ ସେ ହୋଇ ପାରି ନାହାନ୍ତି, ସେଇଟା ତାଙ୍କ ଦୁଃଖର କାରଣ । ମହତ୍ତ୍ୱାକାଙ୍କ୍ଷୀମାନେ ଶ୍ମଶାନକୁ ଗଲାବେଳେ ବି ନିଜର ବଡ଼ପଣକୁ ଛାଡ଼ନ୍ତି ନାହିଁ ।

ଶବଯାତ୍ରା ସତୀଚଉରାଯାଏ ଗଲା । ପୁଲିସବାହିନୀ ତରଫରୁ କବିଙ୍କୁ ମରଣୋତ୍ତର ସମ୍ମାନ ଦିଆଗଲା । ଜ୍ୟେଷ୍ଠପୁତ୍ର ମୁଖାଗ୍ନି ଦେବାଯାଏ ଟେଲିଭିଜନର କ୍ୟାମେରା ରହିଥିଲା । ଏଇ କ୍ୟାମେରା ମୋହରେ କେବଳ ବହୁ ବିଶିଷ୍ଟ ବ୍ୟକ୍ତି କବିଙ୍କର ଶେଷ ଦର୍ଶନ କରିବାକୁ ଆସିଥିଲେ । ଏହି କଥାଟି ଆମ୍ଭେ ବୁଝିଗଲୁ - ଯେତେବେଳେ ଦୂରଦର୍ଶନ କ୍ୟାମେରା ସେଇଠୁ ଦୂର ହୋଇଗଲା । ଶବଦାହର ଶେଷ ପର୍ଯ୍ୟାୟରେ ନିହାତି ଆତ୍ମୀୟ ଚାରି ଛ'ଜଣଙ୍କୁ ଓ କର୍ତ୍ତବ୍ୟରତ ପୁଲିସଙ୍କୁ ଛାଡ଼ିଦେଲେ ଆଉ ସମସ୍ତେ ଦୂର ହେଇଗଲେ ।

ସବୁଠାରୁ ବେଶି ଦୁଃଖ ଲାଗିଥିଲା ଯେତେବେଳେ ଶବ ନିକଟରେ ଆତ୍ମୀୟ ସ୍ୱଜନ କାନ୍ଦୁଥିଲେ ଆଉ ଏ ମହତ୍ତ୍ୱାକାଙ୍‌କ୍ଷୀମାନେ ଟେଲିଭିଜନ କ୍ୟାମେରା ସାମ୍ନାରେ ପୋଜ୍ ଦେଉଥିଲେ । ଛାଡ଼ନ୍ତୁ, ଦୁଃଖ କରିବାର କିଛି ନାହିଁ- ଏମାନେ ମହାନ, ଶ୍ମଶାନକୁ ଗଲାବେଳେ ବି ଏମାନଙ୍କର ବୈରାଗ୍ୟ ଆସେ ନାହିଁ ।

ଏଇ ଲେଖକ ଓ କବିଙ୍କ ତିରୋଧାନ ପରେ ଏ ରାଜ୍ୟର କିଛି ମହାନ୍ ଲେଖକ ସମ୍ବାଦପତ୍ରଗୁଡ଼ିକରେ ସେମାନଙ୍କର ସ୍ମୃତିଚାରଣ କରନ୍ତି । ଏଭଳି ସ୍ମୃତିତର୍ପଣ ଆପଣମାନେ ବି ପଢ଼ିଥିବେ । ଆପଣଙ୍କର ବି ସନ୍ଦେହ ହେଉଥିବ ସେ ସେମାନେ ଦିବଂଗତ ସାହିତ୍ୟସ୍ରଷ୍ଟାଙ୍କ ସ୍ମୃତିଚାରଣ କରୁଛନ୍ତି ନା ନିଜର ବଡ଼ିମା ଦେଖାଉଛନ୍ତି ।

ସମ୍ପ୍ରତି ଓଡ଼ିଶାର ଜଣେ ବିଶିଷ୍ଟ ବ୍ୟଙ୍ଗକାରଙ୍କର ଅକାଳ ଦେହାନ୍ତ ହେଲା । ତାଙ୍କ ସ୍ମୃତିଚାରଣ କରି ଜଣେ ମହାନ୍ ଲେଖକ ଯେଉଁ ଶ୍ରଦ୍ଧାଞ୍ଜଳି ଦେଖାଇଛନ୍ତି ବୋଲି ଜଗତକୁ ଜଣାଇଲେ ସେଥିରେ ଦିବଂଗତ ସାରସ୍ୱତ ପ୍ରାଣଙ୍କ ମହିମା ଅପେକ୍ଷା ଲେଖକଙ୍କ ବଡ଼ପଣ ଅଧିକ ଥିଲା । ନିଜକୁ ବଡ଼ ଦେଖାଇବାକୁ ଯାଇ ଅନ୍ୟକୁ ନ୍ୟୂନ କରିବା କେବଳ ହୀନମନ୍ୟତା ବୋଲି ଆମେ ବିଚାର କରୁ ।

ଆମେ ଏହି ସ୍ମୃତି ଚାରଣଟି ପଢ଼ି ବହୁତ ଦୁଖକଲୁ । ହେ ମହାନ ଲେଖକ ! ଆପଣଙ୍କ ଭଳି ଲେଖକ ଯଦି ଅନ୍ୟର ସ୍ମୃତିଚାରଣ କରିବାକୁ ଗଲାବେଳେ ନିଜର ହିଁ ବଡ଼ପଣ ବା ପାରିଲାପଣ ଦେଖାଇ ବସେ, ଆମେ କାହାକୁ କହିବା ? ସେହି ମହାନ ଲେଖକ ଆମ ପିଢ଼ିର ଜଣେ ଶ୍ରେଷ୍ଠ ବ୍ୟଙ୍ଗକାର । ମରିଗଲା ପରେ ଶବ ପାଉଁଶ ହୁଏ, ଶିବ କିନ୍ତୁ ବିଭୂତି ହୁଅନ୍ତି । ଆମପାଇଁ ସେ 'ଶିବ' । ତାଙ୍କର ବିଭୂତି ଲାଭକରି ଆମ୍ଭେ ଧନ୍ୟ ହେଇଚୁ । ଆପଣ ନିଜକୁ କେବଳ ବିଭୂତି କରି କାହାକୁ ପାଉଁଶ କଲେ ଆମକୁ କଷ୍ଟ ତ ନିଶ୍ଚୟ ଲାଗିବ ।

(ଆମ ସମୟର ଜଣେ ବିଶିଷ୍ଟ ବ୍ୟଙ୍ଗକାର ସ୍ୱ ଗନ୍ତାୟତ ଶିବପ୍ରସାଦଙ୍କ ସ୍ମୃତିରେ ଜଣେ ଔପନ୍ୟାସିକଙ୍କ ସ୍ମୃତିଚାରଣ ପାଠକରି ଯନ୍ତ୍ରଣା ଅନୁଭବ କଲାପରେ ଲିଖିତ ।)



# - ସା ବିଦ୍ୟା ଯା ବୃତ୍ତିଗତାୟ

ପିଲାଙ୍କ ପରୀକ୍ଷା ପାଖଉଚି । ପିଲାଙ୍କଠୁ ବାପାମାଆ ବେଶୀ ଚିନ୍ତିତ ଚାହୁଁଚାହୁଁ ପରୀକ୍ଷା ସରିଯିବ, ଫଳ ବାହାରିପଡ଼ିବ, କୋଉଠି ଗୋଟେ ନାଁ ଲେଖାଇବାକୁ ହବ । ପିଲା କୋଉ ବିଷୟ ନେଇ ପାଠ ପଢ଼ିବ ସେ ନିଷ୍ପତ୍ତି ନେଇ ସାରିଲେଣି ବାପା-ମାଆମାନେ । ଆବଶ୍ୟକ ଟଙ୍କା ଯୋଗାଡ଼ରେ ବି ଲାଗି ପଡ଼ିଲେଣି । ଅଳ୍ପ ନମ୍ବର ରଖିକି କୋଉ ବେସରକାରୀ କଲେଜରେ ବିଜ୍ଞାନ ପଢ଼ିହେବ ଓ ଇଂଜିନିୟରିଙ୍ଗ୍ କଲେଜରେ କେତେ ଚାନ୍ଦା ତା'ର ତାଲିକା ଏବେ ଘରେ ଘରେ ।

ଏ ପରିପ୍ରେକ୍ଷୀରେ ବିଜ୍ଞ ଲୋକେ କହନ୍ତି-ପିଲାର ରୁଚି ଓ ଆଗ୍ରହକୁ ଦେଖି ପାଠ ପଢ଼ାଇବା ଉଚିତ । ପିଲା ଉପରେ କୌଣସି ପାଠକୁ ଜବରଦସ୍ତି ଲଦିଦେବା ଠିକ୍ ନୁହଁ । ଏଥିପାଇଁ ଅଭିଭାବକମାନେ ପିଲାର ରୁଚି ପ୍ରତି ଯଥେଷ୍ଟ ଯତ୍ନଶୀଳ ହେବା ଦରକାର । ଶିକ୍ଷକମାନଙ୍କୁ ଏ ଦାୟିତ୍ୱ ଦେଇଦେଲେ ଆହୁରି ଭଲ ।

ମୁଁ କିଛି ଦିନ ଶିକ୍ଷକତା କରୁଥିବା ସମୟରେ ଜଣେ ବାପା ତାଙ୍କ ପିଲାର ଦାୟିତ୍ୱ ମତେ ଦେଇଥିଲେ । ପିଲାର ପାଠପଢ଼ା ସହ ତା'ର ରୁଚି ଓ ଆଗ୍ରହକୁ ଅନୁଧ୍ୟାନ କରିବାର କାମ ମୋର ଥିଲା । ଥରେ ବିଜ୍ଞାନ ପରୀକ୍ଷାରେ ପିଲା ଦେଇଥିବା ପ୍ରଶ୍ନର ଉତ୍ତରରୁ ପିଲାର ରୁଚି ସ୍ପଷ୍ଟ ହୋଇଯାଇଥିଲା । ସେ ପ୍ରଶ୍ନ ଆଉ ଉତ୍ତର ମଧ୍ୟରୁ ଦୁଇଟି ନମୁନା ଆମ୍ଭେ ନିମ୍ନରେ ପ୍ରଦାନ କରୁଅଛୁ ।

ପ୍ରଶ୍ନ-୧) ଜଳରେ ଅର୍ଦ୍ଧନିମଜ୍ଜିତ ଦଣ୍ଡ ବକ୍ର ଦେଖାଯାଏ କାହିଁକି ?

ଉତ୍ତର - ଜଳ ହିଁ ଜୀବନ । ଜଳ ସମ୍ପର୍କରେ କବି ଲେଖିଚନ୍ତି - ଜଳ ବହୁଳେ ସୃଷ୍ଟି ନାଶ, ଜଳ ବିହୁନେ ସୃଷ୍ଟି ନାଶ । ଜଳ ଏକ ତରଳ ପଦାର୍ଥ ହେଲେ ମଧ୍ୟ ପଥରଠୁ ବି ତା'ର ଅଧିକ ସାମର୍ଥ୍ୟ । ସେଇଥି ପାଇଁ ତ ଜଳର ଅନ୍ୟନାମ ଜୀବନ । ଯୋଉ ଜଳର ଆଧିକ୍ୟରେ ସୃଷ୍ଟିଟା ନାଶ ହେଇଯାଉଚି, ପାତ୍ରର କିଛି ଜଳ କ'ଣ ଗୋଟାଏ ଦଣ୍ଡକୁ ବକ୍ର କରିପାରିବ ନାହିଁ ?

ପ୍ରଶ୍ନ-୨) ପୃଥିବୀର ଓଜନସ୍ତର କମିଗଲେ କ'ଣ କ୍ଷତି ହେବ?

ଉତ୍ତର- ଏହି ପ୍ରଶ୍ନର ଉତ୍ତର ଏକ ଦୃଷ୍ଟାନ୍ତ ସହ ବୁଝାଇଦିଆଯାଇପାରେ । ମନେକର-ତୁମ ବାପା ତୁମକୁ ଦୋକାନରୁ ସୁଜି କିଲୋଟିଏ ଆଣିବା ପାଇଁ ପଠାଇଛନ୍ତି । ଦୋକାନରୁ ସୁଜିଠୁଙ୍ଗା ନେଇ ଆସିବାବେଳେ ତମେ ବାଟରେ ଝୁଣ୍ଟି ପଡ଼ିଲ ଏବଂ ଠୁଙ୍ଗାରୁ କିଛି ସୁଜି ମାଟିରେ ପଡ଼ିଗଲା । ତେବେ ସୁଜିର ଓଜନ କମିଯିବ ଏବଂ ଠୁଙ୍ଗା ମଧ୍ୟରେ ସୁଜିର ସ୍ତର ମଧ୍ୟ କମିଯିବ । ତମେ ଯଦି ମାଟିରୁ ସୁଜିକୁ ଗୋଟାଇ ଠୁଙ୍ଗାରେ ଭର୍ତ୍ତିକର ତେବେ ସେ ଆଉ ଖାଦ୍ୟ ଉପଯୋଗୀ ହୋଇପାରିବ ନାହିଁ । ଓଜନସ୍ତର କମିଥିବା ସୁଜି ଠୁଙ୍ଗାକୁ ଧରି ଘରକୁ ଆସିଲେ ତମେ ବାପା-ମାଆଙ୍କଠାରୁ ଦାୟିତ୍ୱହୀନତା ପାଇଁ ଗାଳି ଖାଇବ । ଏହା ନକଲେ ବାପା ଓଜନରେ ଦୋକାନୀ ଠକିଛି ବୋଲି ଅଯଥାରେ ସନ୍ଦେହ କରିବେ । ଏହି ଭଳି ପୃଥିବୀର ଅନେକ କ୍ଷତି ହେବ ।

ଏ ସମସ୍ତ ଉତ୍ତର ପାଠ କଲାପରେ ମତେ ଲାଗିଲା ଏ ପିଲା ଦେଇ ବିଜ୍ଞାନ ପାଠ ହେବନାହିଁ । କିନ୍ତୁ ଓଡ଼ିଆ ସାହିତ୍ୟରେ ତା'ର ପାଣ୍ଡିତ୍ୟ ଓ ସୃଜନଶୀଳତାକୁ କୌଣସି ପାଠକ ଅସ୍ୱୀକାର କରିପାରିବ ନାହିଁ ।

ପରଦିନ ପିଲାର ବାପାଙ୍କ ପାଖକୁ ମୁଁ ଖବର ପଠେଇଲି । କହିଲି- ଆଜ୍ଞା ପିଲାର ରୁଚି ଓ ଆଗ୍ରହକୁ ଦେଖି ମୋର ମତ ହେଉଚି ପିଲାକୁ ଓଡ଼ିଆ ସାହିତ୍ୟ ହିଁ ପଢ଼ାନ୍ତୁ । ପିଲାର ବାପା ମୋ କଥା ଶୁଣି କିଛି ସମୟ ନିରବ ରହି କହିଲେ - କଲେଜରେ ଓଡ଼ିଆ ବିଷୟର ଅବସ୍ଥା ଆପଣ ଜାଣନ୍ତି । ସରକାର ଯୋଉଠି ଓଡ଼ିଆକୁ ବିଷୟ ଭାବେ ରଖିବା ଉପରେ ପ୍ରଶ୍ନବାଚୀ ଉଠେଇଛନ୍ତି ସେଠି ଓଡ଼ିଆ ବିଷୟ ରଖି ପାଠ ପଢ଼େଇବାର ପ୍ରଶ୍ନ ଉଠୁଛି କେଉଁଠି ? ଆର୍ଟସ ସବଜେକ୍ଟରେ ଏବେ ପିଲା ହିଁ ହଉନାହାନ୍ତି । କଲେଜ ବନ୍ଦ ହେବାକୁ ବସିଲାଣି । ତା'ଛଡ଼ା ଏସବୁ ପାଠ ପଢ଼ି ପିଲା ପେଟ ପୋଷିବା କଷ୍ଟକର ।

ଏଣୁ ଆଗ୍ରହ ଥାଉ କି ନଥାଉ ପିଲାକୁ ବିଜ୍ଞାନ କିମ୍ବା ବୈଷୟିକ ବିଜ୍ଞାନ ପଢ଼େଇବାକୁ ପଡ଼ିବ, କାରଣ ୟାକୁ ଛାଡ଼ିଦେଲେ ପେଟପୋଷା ପାଠ ଆଉ କିଛି ନାହିଁ । ବୃତ୍ତି ପାଇଁ ଏବେ ବିଦ୍ୟା, ବିମୁକ୍ତିପାଇଁ ନୁହଁ ।

ସା ବିଦ୍ୟା ଯା ବୃତ୍ତିଗତାୟ ।



# ନାରୀ ପ୍ରତି ସାବଧାନ

ଟିଣ ପଟିରେ 'ନାରୀ ପ୍ରତି ସାବଧାନ' ଲେଖି ମୁଁ ମୋ ଡ୍ରଇଂ ରୁମ୍‌ରେ ଝୁଲାଇ ଦେଇଚି । ଏହାକୁ ଯଦି ଘରର ଫାଟକ ପାଖେ ଲଗାଇଥାନ୍ତି, ନାରୀ ପ୍ରତି ଅସମ୍ମାନ ହେଇଯାଇଥାନ୍ତା । କାରଣ ସମସ୍ତେ ଜାଣନ୍ତି ଫାଟକ ପାଖରେ କାହାପ୍ରତି ସାବଧାନ ଲେଖାଯାଏ । ମୁଁ କିନ୍ତୁ ବହୁ ସାମ୍ପ୍ରତିକ ଘଟଣାବଳୀ ଦେଖି ନିଜକୁ ସଂଯତ କରିବା ପାଇଁ ଡ୍ରଇଂ ରୁମ୍‌ରେ ଲେଖାଟିକୁ ଟାଙ୍ଗି ଦେଇଚି । ନାରୀ ଜାତିକୁ ଅସମ୍ମାନ କରିବାର ଉଦ୍ଦେଶ୍ୟ ମୋର ଆଦୌ ନାହିଁ । ମୁଁ ବି ନାରୀ ଜାତିକୁ ସମ୍ମାନ କରେ ।

ନାରୀର ତିନି ରୂପ - ଜନନୀ, ଭଗିନୀ, ଜାୟା । ଯା'ଭିତରୁ ପ୍ରମୁଖ ରୂପ ଦୁଇଟି ହେଲା ଜନନୀ ଓ ଜାୟା । ତେବେ 'ଅଜ୍ଞାନ ବିଚାର' ମାଧ୍ୟମରେ ପ୍ରଥମେ ଏ ଦୁଇ ରୂପକୁ ସମ୍ମାନ ଜଣାଇ ମୁଁ ମୋ ଲେଖାଟିକୁ ଆରମ୍ଭ କରୁଚି ।

ଯୋଉ ନାରୀ ମା' ରୂପରେ ୨୧ ବର୍ଷ ଲାଗି ମତେ ଭେଣ୍ଡାକଲା ସେ ମାଆ ରୂପୀ ନାରୀକୁ ମୁଁ ସମ୍ମାନ ଜଣାଉଚି ଏବଂ ଏକୋଇଶ ଦିନ ଭିତରେ ସ୍ତ୍ରୀ ରୂପେ ମତେ ଯିଏ ମେଣ୍ଢା କରିଦେଲା ସେ ନାରୀକୁ ବି ମଥାନତ କରି ସମ୍ମାନ ଜଣାଉଚି । ମାଆ ରୂପରେ ମୋ ମୁଣ୍ଡରେ ଯିଏ ହାତବୁଲାଇ ଆଣିବା ପରେ ମୁଣ୍ଡରେ କେଶ ଉଠିବା ଆରମ୍ଭ କଲା ସେ ମାଆରୂପୀ ନାରୀକୁ ମୁଁ ସମ୍ମାନ ଜଣାଉଚି । ସ୍ତ୍ରୀ ରୂପରେ ଯିଏ ହାତ ବୁଲାଇଲା ପରେ ମୁଣ୍ଡରୁ ଅଧା କେଶ ଉପୁଡ଼ିଗଲା ସେଇ ନାରୀକୁ ମଧ ସମ୍ମାନ ଜଣାଉଚି ।

ଜନନୀ, ଭଗିନୀ, ଜାୟାକୁ ଛାଡ଼ି ନାରୀର ଆଉ ଏକ ରୂପ ବି ଲୁଚି ରହିଚି । ଯାହାକୁ ଜାୟାର ପାଖାପାଖି ରୂପ ବୋଲି କୁହାଯାଇପାରେ । ଛାୟା, ମାୟା ରୂପରେ ସେ ଲୁଚି ରହିଥାଏ, ହଠାତ୍ କାୟା ବିସ୍ତାର କରେ । ବୀରାସ୍ୱାନ୍‌ଙ୍କ ମୃତ୍ୟୁ ପରେ, ଅଭିଷେକ ବଚ୍ଚନଙ୍କ ବିବାହ ସମୟରେ ଆମେ ଏହିଭଳି ରୂପମାନ ଦର୍ଶନ କରିଚୁ । ଆଗରୁ ଜଣାନଥିବା ଜଣେ ନାରୀ ଆସି ତାଙ୍କୁ ବୀରାସ୍ୱାନ୍‌ର ସ୍ତ୍ରୀ ବୋଲି

ଦାବି କଲା । ଅଜ୍ଞନାମଧେୟା ଜଣେ ଅଭିନେତ୍ରୀ ନିଜକୁ ଅଭିଷେକଙ୍କ ପତ୍ନୀ ବୋଲି ଦାବି କରି ହାତର ନାଡ଼ି କାଟିଦେଇଥିଲେ ।

ସମ୍ପ୍ରତି ସେଇଭଳି ଜଣେ ନାରୀ ଆବିର୍ଭୂତା ହେଇଚନ୍ତି ହାଇଦରାବାଦରେ । ସେ କିନ୍ତୁ ବିବାହର ନାଁ ନେଉନାହାନ୍ତି, ପ୍ରଥମେ ଛାଡ଼ପତ୍ରର କଥା ଉଠାଉଚନ୍ତି । ଏ ମର୍ମରେ ମୋର ଗୋଟେ ଘଟଣା ମନେ ପଡୁଚି । ଜଣେ ବ୍ୟକ୍ତି ଓକିଲଙ୍କ ପାଖକୁ ଯାଇ ପଚାରିଲେ, 'ଆଜ୍ଞା ! ଛାଡ଼ପତ୍ର ଦେବା ପାଇଁ କ'ଣ କ'ଣ ଆବଶ୍ୟକ ?' ଓକିଲ ହସିଦେଇ ସଂକ୍ଷିପ୍ତ ଉତ୍ତରଦେଲେ-ବିବାହ । ମତେ ବି ଏଇ ଉତ୍ତରଟି ପ୍ରଥମେ ଅଡୁଆ ଲାଗିଥିଲା; କିନ୍ତୁ ଏବେ ସୋହେବ-ସାନିଆଙ୍କ ବିବାହ ମାମଲା ଉଠିବା ପରେ ଆଉ ଲାଗୁନାହିଁ । ଆୟେଶା ସିଦ୍ଦିକୀଙ୍କୁ ସୋହେବ ବିବାହ କରିଚନ୍ତି ନା ନାହିଁ ଜଣାନାହିଁ କିନ୍ତୁ ଛାଡ଼ପତ୍ର କଥା ଉଠିଲାଣି । ବହୁ ଘଣ୍ଟା ଚକଟା ପରେ ଏବେ ଜଣାପଡୁଚି ଯେ ଟେଲିଫୋନ୍‌ରେ ତାଙ୍କର ବିବାହ ସରିଚି । ଯାଙ୍କ କାଜି, ତାଙ୍କ କାଜି ଆସିଚନ୍ତି, ଦିହେଁ ରାଜି ହେଇ ବାହାହେଇଚନ୍ତି । ଆମେ ପାଜି ମଝିରେ କାହିଁକି ପଶିବା ? ଛାଡ଼ନ୍ତୁ ।

ସୋହେବଙ୍କ ବାହାଘର ଟେଲିଫୋନ୍‌ରେ ଶସ୍ତାରେ ଶସ୍ତାରେ ହେଇଯାଇଥିଲା । ଏବେ ଛାଡ଼ପତ୍ର ତାଙ୍କୁ ମହଙ୍ଗା ପଡ଼ିଚି । ହରଜାନା ୧୫ ହଜାର ଟଙ୍କା ଓ ଭରଣପୋଷଣ ବାବଦ ଏବେ ତାଙ୍କୁ ମାସିକ ୫ ହଜାର ଟଙ୍କା ଦେବାକୁ ପଡୁଚି । ଶସ୍ତାରୁ ହୀନସ୍ତା । ଯା' ହେଉ, ଏପ୍ରିଲ ୧୫ରେ ସାନିଆଙ୍କ ସହ ସୋହେବଙ୍କ ବାହାଘର ହେଉଚି । ଏଥର ବାହାଘରଟା କିନ୍ତୁ ଜମେଇକି ହେଉ, ବେଶ୍ ଖର୍ଚ୍ଚବାର୍ଚ୍ଚ ହେଉ । କିଏ ଜାଣେ ଆଗକୁ କ'ଣ ହେବ ? ଶସ୍ତାରୁ ଆଉ ସୋହେବ ହୀନସ୍ତା ନହୁଅନ୍ତୁ ।

(ସାନିଆ ମିର୍ଜାଙ୍କ ସୋହେବଙ୍କ ସହ ବାହାଘର ଅବସରରେ ଲିଖିତ)



# ଚାକିରି ଜୀବନ ପରଦେଶକୁ

ଅତି ଅଲିଅଳ ଝିଅ । ଏଇ ଘରେ ରହୁଥିଲା । ଏଇ ଅଗଣାରେ ଖେଳୁଥିଲା । ଏଇ ଦାଣ୍ଡଦୁଆରେ ଠିଆ ହେଉଥିଲା । ଘରଛାଡ଼ି କେବେ କୁଆଡ଼େ ଯାଇନଥିଲା । କୋଉ ବନ୍ଧୁ ବାନ୍ଧବ ଘରକୁ ଯାଇ ବି ଦି'ଦିନ ରହିନଥିଲା; କିନ୍ତୁ ବିଧିର ବିଧାନ । ଏବେ ଘରଛାଡ଼ି ସେ ଚାଲିଯାଉଚି । ଘରେ କାନ୍ଦ ବୋବାଳି ପଡ଼ିଚି । ଏଇ ଦୁଃଖଦ ଦୃଶ୍ୟକୁ ଦେଖି ଗୀତିକାର ଲେଖିଚନ୍ତି

ଏ ଅଗଣା ଏ ଘର
ଏଇ ଦାଣ୍ଡ ଦୁଆର
ମତେ କଲା ପର- ଟୋପାଏ ସିନ୍ଦୂର ।

ଏହିଭଳି ଏକ ଦୁଃଖଦ ଘଟଣା ଆମ ରାଇଜରେ ଏବେ ଘଟିବାକୁ ଯାଉଚି । ପ୍ରଥମେ ଡାକ୍ତର, ତା'ପରେ ଅଧ୍ୟାପକ ଆଉ ଏବେ ଇଂଜିନିୟରଙ୍କ ବିଦାବେଳ । ବହୁଦିନ ଧରି ରହିଆସୁଥିବା ସରକାରୀ ଘର, ସରକାରୀ ଅଗଣା, ସରକାରୀ ଦାଣ୍ଡଦୁଆରକୁ ଏଥର ଭୁଲିଯିବା ପାଇଁ ହେବ । ନିଶ୍ଚିତ ଭାବେ ଏହା ଏକ ଦୁଃଖଦ ଘଟଣା । କିନ୍ତୁ ଦୁଃଖରେ ୟାଙ୍କ ପାଇଁ କୋଉ ଗୀତିକାର ପଦଟିଏ ବି ଲେଖିଲେ ନାହିଁ । ଏଣୁ ଆମ୍ଭେ ସେ ପୁରୁଣା ଗୀତର ଢାଞ୍ଚାରେ ପଦଟିଏ ଲାଳିକା ଲେଖୁଚୁ ।

ଏ ଅଗଣା ଏ ଘର
ଏଇ ଦାଣ୍ଡଦୁଆର
ମତେ କଲା ପର- ଗୋଟାଏ ଅର୍ଡର ।

ଗୋଟାଏ ବଦଳି ଅର୍ଡରର କଥା ଉଠିବାକ୍ଷଣି ଚାରିଆଡ଼େ କନ୍ଦାକଟା ଆରମ୍ଭ ହେଇଗଲାଣି । ଏହା ଏକ ସ୍ୱାଭାବିକ ଘଟଣା । ଯିଏ ଅଙ୍ଗେ ନନିଭେଇଚି ସେ ଏ ଦୁଃଖକୁ ବୁଝିପାରିବ ନାହିଁ । ୟାଙ୍କ ଦୁଃଖ ଦେଖି ବ୍ୟଙ୍ଗକରିବାର ଉଦ୍ଦେଶ୍ୟ ଆମର ନାହିଁ । ଏମାନଙ୍କ ପ୍ରତି ଆମର ସହାନୁଭୂତି ଅଛି କିନ୍ତୁ ବିଧିର ବିଧାନ ଭଳି ଦେଶର ବି ଗୋଟାଏ ବିଧାନ ଅଛି । ସେ ବିଧାନକୁ ଆନ କରିବା ପାଇଁ ଆମେ କିଏ ?

ବିଧିର ବିଧାନରେ ଝିଅଟିଏ ପରଘରକୁ ଚାଲିଯାଏ । ଗଲାବେଳେ ବୁକୁ ଫଟେଇ କାନ୍ଦେ, ଦୁଆରବନ୍ଧରେ ମୁଣ୍ଡବାଡ଼ାଏ, ବାପା-ବୋଉଙ୍କୁ ଜାବୁଡ଼ି ଧରେ । ଝିଅ ଅଧିର ହେଇ କାନ୍ଦିଲାବେଳେ ବାପାକୁ ବଧିର ହେଇଯିବାକୁ ପଡ଼େ । ଝିଅର ଦୁଃଖରେ ବାପା ଯଦି ଦୁଃଖୀ ହେଇ କହେ- ନାଇଁଲୋ ମାଆ, ପରଘରକୁ ଯିବା ବଡ଼ କଷ୍ଟ, ତୁ ଏଇ ଘରେ ଥା'; ତେବେ ଏ ସଂସାର ଚାଲିପାରିବ ନାହିଁ । ସେହି ଭଳି ଚାକିରିଆଙ୍କ ବଦଳି ଦୁଃଖ ଦେଖି ଏଠି ସରକାର ଯଦି କହନ୍ତେ- ବଦଳିଟା ବଡ଼ କଷ୍ଟ, ତମେ ସେଇ ଜାଗାରେ ଥା', ତେବେ ଏ ଦେଶ ବି ଚାଲି ପାରିବ ନାହିଁ । ଝିଅ ଜନମ ପରଘରକୁ ଭଳି ଚାକିରୀ ଜୀବନ ପରଦେଶକୁ ।

ଦେଶ ଅଛି ବୋଲି ତ ଆମ ଚାକିରି ଅଛି । ଆଉ ଏଇ କେବିକେ ଅଞ୍ଚଳଟା ବି ଆମ ଦେଶର ଅଂଶ ବିଶେଷ । ଚିତ୍ରକୋଣ୍ଡା ଅଞ୍ଚଳରେ ବି ରୋଗ ଅଛି, ସେଠିକାର ଲୋକଙ୍କ ବି ନିରୋଗ ରହିବାର ଅଧିକାର ଅଛି । ମାଲକାନଗିରିରେ ଅପାଠୁଆ ଅଛନ୍ତି, ସେଠି ବି ଲୋକଙ୍କର ପାଠ ପଢ଼ିବାର ଅଧିକାର ଅଛି । ଦାରିଙ୍ଗବାଡ଼ି, ବାଲିଗୁଡ଼ା ଅଞ୍ଚଳରେ ବି ରାସ୍ତାର ସମସ୍ୟା ଅଛି, ସେମାନଙ୍କର ବି ପକ୍କା ରାସ୍ତାରେ ଚାଲିବାର ଅଧିକାର ଅଛି । ଆମ ବଦଳିକୁ ରଦ୍ଦ କରି ଏମାନଙ୍କ ଅଧିକାରକୁ ଛଡ଼ାଇ ନେବାର ଅଧିକାର ଅନ୍ତତଃ ଆମର ନାହିଁ ।

ତା'ଛଡ଼ା ଆମେ ଏ ସହରରେ ବେଶ୍ କିଛି କାଳ କଟେଇ ସାରିଚେ, ସହରର ଚାକଚକ୍ୟ ଭିତରେ ନିଜକୁ ହଜେଇ ଦେଇଚେ । ବନ, ଲତା, ପାହାଡ଼ କୋଳରେ ପିକ୍‌ନିକ୍ କରିଛେ । ସିନେମାରେ ବନ, ଲତା, ପାହାଡ଼ର ଦୃଶ୍ୟ ଦେଖି ଉତ୍‌ଫୁଲ୍ଲିତ

ହେଇଚେ । ଆଉ ଗାଇଚେ :-

ଏଇ ଯେ ବନଲତା ପାହାଡ଼

ଆହାରେ ଦିଶେ କେଡ଼େ ସୁନ୍ଦର

ଏଠି ଦିନ ବିତେନା, ଏଠି ରାତି ସରେନା ।

ଏବେ ଆମକୁ ସୁଯୋଗ ମିଳିଛି, ଏଇ ବନଲତା ପାହାଡ଼ କୋଳରେ କିଛି ବର୍ଷ କାଟିବା ପାଇଁ । ସେଠି କେମିତି ଦିନ ବିତୁନି କି ରାତି ସରୁନି ତାହା ଅଙ୍ଗେ ନିଭେଇବାର ସୁଯେଗକୁ ହାତଛଡ଼ା କରିବାନି ।



# ଏ ଯୁଗର ଭୀମସେନ

**ବା**ଣିଜ୍ୟେ ବସତେ ଲକ୍ଷ୍ମୀ । ବେପାର ବଣିଜ କଲେ ଧନ ମିଳେ । ଆଜିକାଲି ବେପାର ଆଉ ଲାଭଜନକ ହେଉନାହିଁ ବୋଲି ଛୋଟକାଟିଆ ବେପାରୀ କହନ୍ତି । ବେପାରରେ ପୁଣି ବେପାର ଅଛି । ସବୁ ବେପାରରେ ଲାଭ ନାହିଁ । ଏବେ ରାଜନୀତିକୁ ବି ବେପାର ବୋଲି ଧରାଗଲାଣି ଏବଂ ଏହା ଏକ ଲାଭଜନକ ବ୍ୟବସାୟ । ବେପାରର ଉପ-ବେପାର ବି ଥାଏ । ମଦ ବେପାରରେ ହୋଲସେଲିଂ, ରିଟେଲିଂ, ମ୍ୟାନୁଫାକ୍‌ଚରିଂ, ବାର ଆଦି ହେଲା ସବୁ-ଉପବେପାର । ଖଣି ବେପାରରେ ଲିଜ୍, ଖନନ, ପରିବହନ, ଆମଦାନୀ ଆଉ ରପ୍ତାନୀ ଆଦି ଉପ-ବେପାର । ସେହିଭଳି ରାଜନୀତି ବେପାରରେ ଘୋଡ଼ା ବେପାର ଏକ ଉପ-ବେପାର । ଏହାକୁ ସିଜ୍‌ନାଲ ବିଜ୍‌ନେସ ମଧ୍ୟ କୁହାଯାଇପାରେ । ହୋଲିରେ ରଙ୍ଗ, ଦୀପାବଳିରେ ବାଣ, ରାକ୍ଷୀ ପୂର୍ଣ୍ଣିମାରେ ରାଖି ଭଳି ରାଜ୍ୟସଭା ନିର୍ବାଚନରେ ଘୋଡ଼ା ବେପାର ଏକ ସିଜ୍‌ନାଲ ବିଜ୍‌ନେସ୍ । ଏବେ ଏବେ ଏଭଳି ଘୋଡ଼ାବେପାର ଚର୍ଚ୍ଚାରେ । ଦୁଇ ତିନିଜଣ ବେପାରୀ ଏଥିରେ ମାଲେମାଲ ହେଇଥିବା କଥା ବି ଶୁଣାଯାଉଚି ।

ସବୁ ବେପାର ପରି ଏହି ଘୋଡ଼ା ବେପାରରେ ବି ମୂଳଧନ ଦରକାର ପଡ଼ିଥାଏ । ଲଢୁଆ ପ୍ରାର୍ଥୀମାନେ ଦୀର୍ଘ ମିଆଦୀ ଲାଭ ପାଇଁ ଅର୍ଥ ଖଟେଇ ଥାନ୍ତି; କିନ୍ତୁ ବିନା ମୂଳଧନରେ ବି କିଛି ଲୋକ ଏଥିରେ ହାତ ଚିକ୍କଣ କରିଦିଅନ୍ତି । ଏମାନଙ୍କ ବ୍ୟବସାୟର ମୂଳଧନ ଭାବେ 'ବିଶ୍ୱାସଘାତକତା' କାମ କରେ । ରାଜନୀତିରେ ଅବଶ୍ୟ ବିଶ୍ୱାସଘାତକତା ଶବ୍ଦଟିକୁ 'ନିଜସ୍ୱ ମତ' ବା 'ଆତ୍ମାର ଡାକରା' ବୋଲି କୁହାଯାଇଥାଏ ।

କେହି କେହି ଏହି ନିର୍ବାଚନକୁ ବେପାର ବୋଲି ମାନିବା ପାଇଁ ପ୍ରସ୍ତୁତ ନୁହନ୍ତି । ସେମାନେ ଏହାକୁ ଯୁଦ୍ଧ ବୋଲି କହିଥାନ୍ତି । ଆମେ ବି ଯା'କୁ ଯୁଦ୍ଧ

ବୋଲି ମାନିବା ପାଇଁ ରାଜି ହେଲେ ୟା'ଙ୍କ ଭିତରେ ଯୋଦ୍ଧା କାହାନ୍ତି ? ଏଭଳି ଯୋଦ୍ଧାଙ୍କୁ ଖୋଜୁ ଖୋଜୁ ଆମେ ୟାଙ୍କ ଭିତରେ ପୌରାଣିକ ଆଉ ଐତିହାସିକ ଯୋଦ୍ଧାଙ୍କୁ ଠାବ କଲୁ । ପୌରାଣିକ ଯୋଦ୍ଧା ଭାବେ ଭୀମସେନ ଓ ଐତିହାସିକ ଯୋଦ୍ଧା ଭାବେ ଶିବାଜୀ ଆମ ସାମ୍ନାରେ ଉଭାହେଲେ । ସମୟ ବଦଳିବା ସାଙ୍ଗେ ଅବଶ୍ୟ ଏଇ ଯୋଦ୍ଧାମାନଙ୍କ ଯୁଦ୍ଧନୀତି ବଦଳି ଯାଇଚି । ସେ ଯୁଗରେ ସେମାନେ ଲଢ଼େଇ କରି ଚର୍ଚ୍ଚାରେ, ଏ ଯୁଗରେ ଏମାନେ କୋଉ ହସପିଟାଲରେ କିମ୍ବା ଶ୍ୱଶୁର ଘରେ ଲୁଚିକି ଚର୍ଚ୍ଚାରେ ।

ଛାଡ଼ନ୍ତୁ, ଏ ଭୀମସେନମାନେ ଯୋଦ୍ଧା ହୁଅନ୍ତୁ କି ବେପାରୀ ହୁଅନ୍ତୁ ଏମାନଙ୍କ ଉପରେ ଯେ ଲକ୍ଷ୍ମୀ ସଦୟ ଏ କଥାକୁ ଆମେ ଏକରକମ ମାନିବା ପାଇଁ ବାଧ୍; ତେବେ ଆମ ମନରେ ପ୍ରଶ୍ନ ଉଠିପାରେ - ଯୁଦ୍ଧରେ ଲକ୍ଷ୍ମୀ ଆସିଲେ କୁଆଡୁ ?

ମହାଭାରତର କଥାଟିଏ :

ଲକ୍ଷ୍ମୀଙ୍କ କୋଳରେ ଦୁର୍ଯ୍ୟୋଧନ ଲୁଚି ରହିଥାଏ । ଭୀମ ରଡ଼ି ଶୁଣି ସେ ଅଥୟ ହେଉଥାଏ । ଲକ୍ଷ୍ମୀଙ୍କ ଆକଟ ଯୋଗୁ ଦୁଇଦୁଇ ଥର ସେ ରଡ଼ିକୁ ସମ୍ଭାଳି ନେଲା । ତୃତୀୟ ରଡ଼ିକୁ ସମ୍ଭାଳି ନପାରି ଲକ୍ଷ୍ମୀଙ୍କୁ ଛାଡ଼ି ଭୀମ ସଙ୍ଗେ ଗଲା ଲଢ଼ିବା ପାଇଁ । ତା'ପରେ କେଡ଼େ କଲବଲ ହେଇ ମଲା, ଅନ୍ତତଃ ଭୀମସେନ ସେ କଥା ଭୁଲି ନାହିଁ ।

ଏବେ ଭୀମସେନ ଲକ୍ଷ୍ମୀଙ୍କ କୋଳରେ ଶୋଇଚି । ତମେ ଯେତେ ରଡ଼ି ଛାଡ଼, ଯେତେ ହ୍ୱିପ୍ ଜାରିକର ଲକ୍ଷ୍ମୀଙ୍କୁ ଛାଡ଼ି ଏ ଯୁଗର ଭୀମସେନ ଉଠିବ ନାହିଁ ।

(ରାଜ୍ୟସଭା ନିର୍ବାଚନ ସମୟରେ ଘୋଡ଼ାବେପାରରେ ସାମିଲ୍‌ଥିବା ଚର୍ଚ୍ଚିତ ନେତାଙ୍କୁ ନେଇ ଲିଖିତ ।)



# ବଜେଟ୍

'ଆଶା ଆଉ ଆଶଙ୍କା ଭିତରେ ସମସ୍ତେ ଥାଆନ୍ତି । ଏକ ବିରାଟକାୟ ପ୍ରାଣୀ ଆସୁଚି- ହାତୀ ! ସେ ଆସିଲେ କୁଆଡ଼େ ବିରାଟ ଗୋଟେ ଶବ୍ଦ ହେବ । କିଏ କହୁଚି ସେ ଶବ୍ଦରେ କାନ ତାବ୍‌ଦା ହେଇଯିବ ତ କିଏ କହୁଚି କାନଗିରି ଫାଟିଯିବ । ଏଣେ ଶବ୍ଦ ଶୁଣିବାର ଆଶା ତେଣେ କାନ ଫାଟିଯିବାର ଆଶଙ୍କା । ଏଣୁ ଦୁଇ କାନରେ ଆଙ୍ଗୁଳି ପୁରାଇ ସମସ୍ତେ ସେହି ଶବ୍ଦକୁ ଅପେକ୍ଷା କରି ରହିଲେ । ଶେଷରେ ହାତୀ ଆସିଲା, ଚାଲିଗଲା, ସୋର ଶବଦ କିଛି ହେଲାନି । ଠିକ୍ ସେମିତି ଆମର ବହୁ ପ୍ରତୀକ୍ଷିତ ବଜେଟ୍ ଆସିଲା ଆଉ ଚାଲିଗଲା, ଯାହା ସୋର ଶବଦ ହେଲା ତାହା ଆମ ଆଶା ତୁଳନାରେ କିଛି ନୁହଁ ।'- ଏଇ କଥାଟି ସେଦିନ ଜଣେ ବଜେଟ୍ ସମୀକ୍ଷକ ଟିଭିରେ କହୁଥିଲେ । ମତେ ସେ କଥାଟି ଠିକ୍ ଲାଗିଲା ନାହିଁ ।

କେବଳ ଅର୍ଥନୀତି ବିଷୟରେ ପାରଦର୍ଶିତା ଥିଲେ ଜଣେ ଭାରତ ଭଳି ଦେଶର ବଜେଟ୍ ସମୀକ୍ଷା କରିପାରିବ ନାହିଁ । ଏଥିରେ ଏ ଦେଶର ସଂସ୍କୃତି ପରମ୍ପରା, ମହାପୁରୁଷଙ୍କ ମହତ୍‌ବାଣୀ ସମ୍ପର୍କରେ ମଧ୍ୟ ଧାରଣା ରହିବା ଦରକାର । ଆମର ପ୍ରିୟ ଅର୍ଥମନ୍ତ୍ରୀ ତାଙ୍କ 'ପ୍ରଣବ' ନାମକୁ ସାର୍ଥକ କରିଛନ୍ତି ଏଥର ବଜେଟ୍ ପ୍ରସ୍ତୁତିରେ । ସେ ଶଙ୍କରାଚାର୍ଯ୍ୟଙ୍କ ମୋହ ମୁଦ୍‌ଗର ପାଠକରି ପ୍ରେରଣା ପାଇଲାପରେ ବଜେଟ୍ ତିଆରି କରିଚନ୍ତି ।

ଶଙ୍କରାଚାର୍ଯ୍ୟ ଲେଖି ଯାଇଚନ୍ତି-

ବାଳଃ ଯାବତ୍ କ୍ରୀଡ଼ାସକ୍ତଃ
ତରୁଣସ୍ତାବତ୍ ତରୁଣୀରକ୍ତଃ
ବୃଦ୍ଧସ୍ତାବତ୍ ଚିନ୍ତାମଗ୍ନଃ
ପରଂବ୍ରହ୍ମଣି କୋପି ନ ଲଗ୍ନଃ ।

ଏହି ଶ୍ଳୋକର ଧାଡ଼ିଧାଡ଼ି କରି ଅର୍ଥ ବାହାର କରିଚନ୍ତି ଆମ ଅର୍ଥମନ୍ତ୍ରୀ, ତା'ପରେ ଯାଇ ଯାହାପାଇଁ ଯାହା ଦରକାର ତାହା ତାହା ଯୋଗାଇ ଦେଇଚନ୍ତି । 'ବାଳଃ ଯାବତ୍ କ୍ରୀଡ଼ାସକ୍ତଃ' ଅର୍ଥାତ୍ ଛୋଟ ପିଲାମାନେ ଖେଳିବାକୁ ଭଲପାଆନ୍ତି । ଏଣୁ ଏଥର ବଜେଟ୍‌ରେ ସରକାର ଛୋଟ ପିଲାଙ୍କ ପାଇଁ ଖେଳଣାର ଦାମ୍ କମେଇ ଦେଇଚନ୍ତି ।

'ତରୁଣସ୍ତାବତ୍ ତରୁଣୀରକ୍ତଃ' - ଅର୍ଥାତ୍ ତରୁଣମାନେ ତରୁଣୀମାନଙ୍କ ପ୍ରତି ଆସକ୍ତ ହୁଅନ୍ତି । କେବଳ ଆସକ୍ତ ହେଇ ତରୁଣୀଙ୍କୁ ପାଇନପାରିଲେ ଏ ତରୁଣମାନେ ପାଗଳ ହେଇଯିବେ । ଏଣୁ ତରୁଣମାନେ ତରୁଣୀମାନଙ୍କ ସାନ୍ନିଧ ପାଇବା ପାଇଁ ଆବଶ୍ୟକୀୟ ମୋବାଇଲ, ରେଡିମେଡ୍ ପୋଷାକ, ପ୍ୟାକିଂଯୁକ୍ତ ବିଦେଶୀ ସାମଗ୍ରୀର ଦାମ୍ ଏଥର ବଜେଟ୍‌ରେ କମିଯାଇଚି ।

'ବୃଦ୍ଧସ୍ତାବତ୍ ଚିନ୍ତାମଗ୍ନଃ'- ବୁଢ଼ାମାନେ ଚିନ୍ତାମଗ୍ନ ରହନ୍ତି । ବୁଢ଼ା ବୟସରେ ବଞ୍ଚିବାପାଇଁ ଚିନ୍ତା ଟିକେ ନିହାତି ଦରକାର । ସେମାନଙ୍କୁ ଭରପୂର ଚିନ୍ତା ଏଥର ବଜେଟ୍‌ରେ ଯୋଗାଇ ଦିଆଯାଇଚି । ବଡ଼ ପରିବାରରେ ଆମେ, ପୁଅମାନେ ବୁଢ଼ାବାପାମାନଙ୍କୁ ମାସିକ ଟଙ୍କା ଧରେଇ ଦେଉ, ସେମାନେ ଘର ଚଳାନ୍ତି । ଏଇ ମାର୍ଚ୍ଚ ପହିଲାରେ ବି ଆମେ ବୁଢ଼ାବାପାମାନଙ୍କୁ ସେଇ ଟଙ୍କା ଦେଲୁ । ତେଲ, ମସଲା, ଖାଦ୍ୟ ସାମଗ୍ରୀର ଦର ବଢ଼ିଲା ପରେ ଘର ଚଳାଇବାର ଚିନ୍ତା ବୁଢ଼ାମାନଙ୍କର ବଢ଼ିଯାଇନି ?

ଶେଷରେ 'ପରଂବ୍ରହ୍ମଣି କୋପି ନ ଲଗ୍ନଃ'- ବ୍ରହ୍ମ ବା ଦେବତାଙ୍କ ପାଇଁ କାହାର ଚିନ୍ତା ନଥାଏ । ଆମ ଦେଶରେ ଦରିଦ୍ରଙ୍କୁ ଦରିଦ୍ର-ନାରୟଣ ବୋଲି କୁହାଯାଇଥାଏ । ଶେଷ ପଙ୍‌କ୍ତିଟିକୁ ଏଥର ବଜେଟ୍‌ରେ ବିଶେଷ ପ୍ରାଧାନ୍ୟ ଦିଆଯାଇଚି, ଦରିଦ୍ରରୂପୀ ନାରାୟଣମାନଙ୍କର ସାମାନ୍ୟ ଚିନ୍ତା କରାଯାଇନାହିଁ ।



# ଚାକିରି ବିକିରି

**ଗାଁ**ରେ କଲେଜ ଖୋଲା ହେବାର ନିଷ୍ପତ୍ତି ନିଆଗଲା । ବୟସ୍କ ଶିକ୍ଷିତ ଲୋକ କିଛି ଏକାଠି ହେଇ କମିଟି ଗଢ଼ିଲେ । ମାଇନର ପାସ୍ ଭଗି ପଧାନେ ତା'ର ନେତୃତ୍ୱ ନେଲେ । ନିଜେ ଜାଗା ଖଣ୍ଡେ ଦେଲେ ଓ କୋଠାଘର ପାଇଁ ପଚାଶ ହଜାର ବି ଦେଲେ । ତାଙ୍କରି ନାଁରେ କଲେଜଟା ହେଲା - ଭଗି ପ୍ରଧାନ ମହାବିଦ୍ୟାଳୟ ।

ଖାଲି ଜାଗା, ଘର ଆଉ ନାଁ ଦେଇଦେଲେ ତ କଲେଜ ହେବନି, ପାଠପଢ଼ା ପାଇଁ ମାଷ୍ଟର ଦରକାର । ଏତେ ଟଙ୍କା ଆସିବ କୋଉଠୁ ? ସେଇ ଅଞ୍ଚଳର ଆଉ କିଛି ଥିଲାବାଲା ଲୋକ ଅଣ୍ଟା ଭିଡ଼ିଲେ । ପ୍ରଥମେ ଗୋଟାଏ ଲେକ୍‌ଚର ପାଇଁ ନୋଟିସ୍ ହେଲା । ଇଂରାଜୀ ଅଧ୍ୟାପକ ପାଇଁ ଯୋଗ୍ୟତା ରଖାଗଲା ଏମ୍.ଏ.ରେ ଫାଷ୍ଟକ୍ଲାସ, ଦରମା ମାତ୍ର ଦୁଇ ହଜାର ଟଙ୍କା । ଆଶା ଓ ଆଶଙ୍କା ଭିତରେ ସମସ୍ତେ ଥିଲେ, ଏତେ କମ୍ ଦରମାରେ କ'ଣ କିଏ ଆସିବ ? ଆଶ୍ଚର୍ଯ୍ୟର କଥା ହଜାରେ ପିଲା ହାଜର ହେଇଗଲେ ।

ଏତେ ପିଲା ଦେଖି ଭଗି ପଧାନେଙ୍କ ମୁଣ୍ଡରେ ଗୋଟେ ଅକଲ ଜୁଟିଲା । ଇଣ୍ଟରଭ୍ୟୁରେ ନିଜେ ବସିପଡ଼ିଲେ ଭଗି ପଧାନ, ପିଲାଙ୍କୁ ପଚାରିଲେ ତୁମକୁ ହଜାରେ ଟଙ୍କା ଦରମା ଦେଲେ ଚଳିବ ? ହଜାରରେ ପାଞ୍ଚଶହ ପିଲା ରାଜି ହେଇଗଲେ । ପାଞ୍ଚଶହ ଭିତରୁ ଜଣକୁ ବଛାଗଲା - ଇଂଲିଶ ଲେକଚର ଭାବେ ।

କିଛି ଟଙ୍କା ତ ବଞ୍ଚିଗଲା । ଏଥର ନୋଟିସ୍ ହେଲା ଓଡ଼ିଆ ଲେକ୍‌ଚର ପାଇଁ । ଯୋଗ୍ୟତା ରଖାଗଲା ଓଡ଼ିଆ ଏମ.ଏରେ ଫାଷ୍ଟକ୍ଲାସ, ଦରମା ପାଞ୍ଚଶହ । ଏହି ଦରମାରେ ବି ଦେଢ଼ ହଜାର ପିଲା ହାଜର ହେଇଗଲେ । ଭଗି ପଧାନଙ୍କ ଅକଲ ତ ତେଜ ହେଇ ରହିଥିଲା, ଏଥର ସେ ସବୁ ପିଲାଙ୍କୁ ପଚାରିଲେ - ବାବୁ ! ତମେ ବିନା ଦରମାରେ ରହିବ ? ବିନା ଦରମାରେ ବି ରାଜି ହେଇଗଲେ ପାଞ୍ଚଶହ । ଜଣକୁ ବାଛିବାକୁ ପଡ଼ିଲା ଓଡ଼ିଆ ଲେକ୍‌ଚର ଭାବେ ।

ଏବେ ଭଗି ପଧାନଙ୍କ ଅକଲ ଘାଇଁଘାଇଁ ହେଇ ଚାଲିବା ଆରମ୍ଭ କରିଦେଇଥିଲା । ଏକାବେଳକେ ନୋଟିସ୍ ଦେଇଦେଲେ ଇତିହାସ, ଅର୍ଥନୀତି, ରାଜନୀତି ବିଜ୍ଞାନ ଲେକ୍‌ଚର ପାଇଁ । ପିଅନ ଓ ଲାଇବ୍ରେରିଆନ୍ ପାଇଁ ବି ନୋଟିସ୍ ହେଇଗଲା । ଏଥିରେ ଯୋଗ୍ୟତା କଥା ଲେଖାଗଲା; କିନ୍ତୁ ଦରମା ଉଲ୍ଲେଖ କରାଗଲା ନାହିଁ । ଇଣ୍ଟରଭ୍ୟୁ ଦିନ ଗାଁରେ ଯାତ୍ରା ଲାଗିଲା ଭଳି ପରିସ୍ଥିତି ସୃଷ୍ଟି ହେଲା । ଭଗି ପଧାନେ ଇଣ୍ଟରଭ୍ୟୁରେ ବସି ପଚାରିଲେ - ବାବୁ ! ଆମ କଲେଜକୁ ସରକାରୀ ଅନୁଦାନ ମିଳିବା ଯାଏ ତମେ... । ପଧାନଙ୍କ ମୁହଁରୁ କଥା ସରିବା ଆଗରୁ ପିଲା କହିଲେ- ବିନା ଦରମାରେ ରହିବା କଥା କହୁଛନ୍ତି ତ, ଆମେ ରାଜି । ଭଗି ପଧାନେ କହିଲେ- ନାଇଁ ବାବୁ, ଅନୁଦାନ ମିଳିବା ଯାଏ ତମେ ଆମକୁ ମାସିକ ହଜାରେ ଲେଖାଏଁ ଦବ । ଏହି ସର୍ତ୍ତରେ ବି ବହୁ ପିଲା ରାଜି ହେଇଗଲେ । ତାଙ୍କ ଭିତରୁ ବି ଯୋଗ୍ୟ ପ୍ରାର୍ଥୀଙ୍କୁ ବାଛିବାକୁ ପଡ଼ିଲା ।

ଏଇ ଘଟଣାଟି ଶୁଣିଲା ପରେ ଆମକୁ ଲାଗୁଥିବ- ହଁ ସେମିତି ଗୋଟେ ସମୟ ଥିଲା, ଏବେ ତ ସେ କଲେଜ ବନ୍ଦ ହେବା ଆରମ୍ଭ କଲାଣି । ସେ ସମୟ ସିନା ସରିଯାଇଛି କିନ୍ତୁ ସେ ପ୍ରକ୍ରିୟା ଏବେ ବି ଜାରି ରହିଛି । ଏବେ ଚାକିରି ପାଇଁ କେହି ଏମ୍ପ୍ଲୟମେଣ୍ଟ ଏକ୍ସଚେଞ୍ଜ ଯାଉନାହିଁ । ଗୋଟିଏ ଅନୁଷ୍ଠାନକୁ ଯାଉଚି, ଯେଉଁଠି ପାଠପଢ଼ା ସହିତ ଚାକିରି ବି ବିକ୍ରି ହେଉଚି । ସେଇଟା ହେଲା ଆଜିକାଲିର ଇଞ୍ଜିନିୟରିଂ, ମ୍ୟାନେଜମେଣ୍ଟ ଆଦି ବୈଷୟିକ ପ୍ରତିଷ୍ଠାନ । ସେଠି ୧୫ ଲକ୍ଷ ଟଙ୍କା ଦେଇ ଆଡମିସନ କରାନ୍ତୁ । ପାଠପଢ଼ା ଶେଷ ନହେଉଣୁ କ୍ୟାମ୍ପସ ନାଁରେ ଚାକିରି ମିଳିଯାଉଚି । ପାଠପଢ଼ାରେ ଗୋଟିଏ ପିଲା ପିଛା ତିନିରୁ ଚାରିଲକ୍ଷ ଟଙ୍କା ଖର୍ଚ୍ଚ କରାଯାଉଚି, ବାକି ସେମାନଙ୍କୁ ଚଢ଼ା ଦରମାରେ ଛ'ମାସ କି ବର୍ଷେ ପର୍ଯ୍ୟନ୍ତ ଚାକିରି ଦିଆହେଉଚି । ବିଭିନ୍ନ ବଡ଼ବଡ଼ କମ୍ପାନୀରେ ଚାକିରି ପାଇ ପିଲା ଖୁସ୍, ବାପାମାଆ ବି ଖୁସ୍ । ଏଇ ମଉକାରେ ପୁଅ ହୋଇଥିଲେ ବେଶ୍ ମୋଟା ଅଙ୍କର ଯୌତୁକ, ଝିଅ ହୋଇଥିଲେ 'ପର ଆନମ୍ ଏତେ ସାଲାରି' କହି ବିନା ଯୌତୁକରେ ବାହାଘର ହେଇଯାଉଚି । କମ୍ପାନୀ ଓ ଅନୁଷ୍ଠାନବାଲାଙ୍କ ଦଲାଲିର ଠିକା ଛ'ମାସ କି ବର୍ଷେ ପରେ ସରିଗଲେ ପିଲା ଆସି ଘରେ । ତେଣିକି ପିଲାଏ କ'ଣ ହେଉଚନ୍ତି ଆପଣମାନେ ଅଧିକ ଜାଣନ୍ତି ।

# ପ୍ରଶ୍ନ ଆପଣଙ୍କ ପାଇଁ

'ଝିଅଟିଏ । ଏକାବେଳକେ ଅନ୍ଧ, ମୂକ, ବଧିର । ଅନ୍ଧ-ମୂକ-ବଧିରଙ୍କ ପାଇଁ ଏବେ ଯୋଉ ପାଠ ବାହାରିଚି ତାହା ବି ସେ ପଢ଼ି ନାହିଁ । ଏମିତିଆ ଏକ ଝିଅକୁ ଭଲପାଇ ବସିଚି ପୁଅଟିଏ ।...' ଏହା କାହାଣୀ ନୁହେଁ ପ୍ରଶ୍ନଟିଏ । ଏ ପ୍ରଶ୍ନଟିକୁ ଆମ୍ଭେ ଶୁଣିଥିଲୁ, ସନ୍ତୋଷଜନକ ଉତ୍ତର ପାଇପାରିଲୁନାହିଁ । କିଛି ବନ୍ଧୁଙ୍କୁ ବି ପଚାରିଲୁ । ତାଙ୍କ ଉତ୍ତର ବି ଆମ ମନକୁ ପାଇଲା ନାହିଁ । ଏବେ ପ୍ରଶ୍ନଟି 'ଅଜ୍ଞାନ ବିଚାର'ର ପାଠକଙ୍କ ପାଇଁ- ପୁଅଟି ଝିଅକୁ ନଛୁଇଁ କେମିତି ଜଣେଇ ପାରିବ ଯେ ସେ ତାକୁ ଭଲ ପାଏ ?

ସମ୍ଭାବ୍ୟ ବିତଣ୍ଡା ଉତ୍ତରକୁ ଉପେକ୍ଷା କରିବା ପାଇଁ ଆମ୍ଭେ ପାଇଥିବା କିଛି ଉତ୍ତର ଏଠାରେ ସ୍ଥାନିତ କରୁଛୁ । ଜଣେ ବନ୍ଧୁ କହିଲେ - ଝିଅଟିର ଦର୍ଶନେନ୍ଦ୍ରିୟ, ଶ୍ରବଣେନ୍ଦ୍ରିୟ ଆଦି ଦୁର୍ବଳ ଥିବାରୁ ଘ୍ରାଣେନ୍ଦ୍ରିୟଟି ନିଶ୍ଚିତ ଭାବେ ପ୍ରଖର ଥିବ । ପୁଅଟି ଯଦି ଗୋଲାପ ଫୁଲଟିଏ ନେଇ ଝିଅର ନାକ ଆଗରେ ହଲାଇଦେବ, ସେ ଗୋଲାପ ଗନ୍ଧରୁ ଝିଅଟି ବୁଝିଯିବ ଯେ ପୁଅଟି ତାକୁ ଭଲପାଏ । ଆଜ୍ଞା ! ଆମ୍ଭେ ମୂଳରୁ କହିଛୁ ଝିଅଟିର ଆଖି ବି ନାହିଁ । ସେ ଟିଭି, ସିନେମା କିମ୍ବା ଭାଲେଣ୍ଟାଇନ୍ ଡେ ପାଳନ ଦେଖିନାହିଁ । ସେ କାହୁଁ ଜାଣିବ ଯେ ଗୋଲାପ ଫୁଲଟା ପ୍ରେମର ପ୍ରତୀକ ।

ଆଉ ଜଣେ ବନ୍ଧୁ ବହୁ ଭାବିଚିନ୍ତି ଉତ୍ତର ଦେଲେ - ଅତି ସହଜ କଥା । କାଗଜ ପଟିରେ ପାନପତରଟେ ଆଙ୍କି ତାକୁ କାଟିଦବ । ତୀରଟାଏ ଆଣି ପାନପତରକୁ ଯୋଖିଦବ । ଦୂରରୁ ଥାଇ ଝିଅ ଦେହକୁ ଫିଙ୍ଗିଦେବ । ପାନପତରକୁ ତୀର ମାରିଥିବା ଜାଣି ଝିଅଟା ବଳେ ବୁଝିଯିବ ଯେ ପୁଅଟା ତାକୁ ପ୍ରେମ କରୁଛି । ଆଜ୍ଞା ! ଏଇଠି ବି ସେଇ କଥା । ଅପାଠୋଇ ବଧିର ଝିଅଟା ପ୍ରେମପତ୍ର ପଢ଼ିନାହିଁ

କି ପ୍ରେମଗୀତ ଶୁଣି ନାହିଁ । ସେ କାହୁଁ ବୁଝିବ ଯେ ପାନପତରକୁ ତୀର ମାରିଦେଲେ ପ୍ରେମ ହେଇଯାଏ ବୋଲି । ଶେଷରେ ଜଣେ ସାହିତ୍ୟିକ ବନ୍ଧୁଙ୍କ ଉତ୍ତର-'ପ୍ରେମରେ ଛୁଇଁବା କ'ଣ ଦରକାର ? ପ୍ରେମରେ କହିବା କ'ଣ ଦରକାର? ପ୍ରେମ ତ ହୃଦୟର କଥା । ହୃଦୟ ହୃଦୟକୁ ଛୁଇଁବ, ହୃଦୟର କଥା ହୃଦୟ ଶୁଣିବ ।' ଏ ଉତ୍ତରଟି ବହୁ ଲୋକଙ୍କ ମନକୁ ପାଇଲା । ମତେ କିନ୍ତୁ ଜମାରୁ ଠିକ୍ ଲାଗିଲା ନାହିଁ । ଏଇଟା ଟେକ୍‌ନିକାଲି ଇମ୍ପସିବଲ । 'ଦିଲ୍ କି ବାତ୍', 'ହୃଦୟ କଥା' ଏଗୁଡ଼ାକ ସେରୋସାୟରି, କାବ୍ୟ କବିତାରେ ଚଳେ । ବାସ୍ତବ ଦୁନିଆରେ ଚଳେ ନାହିଁ ।

ବିନା ଛୁଆଁ, ବିନା କୁହା, ବିନା ଦିଆ-ଥୁଆରେ ଭଲ ମଣିଷଙ୍କ ପ୍ରେମ ହେଇପାରୁନି । ଉଦାହରଣ ପାଇଁ ଆଇଜି ପାର୍କକୁ ଚାଲନ୍ତୁ । ସେଇଠି ଘଣ୍ଟା ଘଣ୍ଟା ଦେହ ଛୁଆଁରେ ବି ପ୍ରେମ ଜଣାଇ ହେଉନାହିଁ । କୋଉ ଛାତକୁ ଅନାନ୍ତୁ, ପୁଅ-ଝିଅ ମୋବାଇଲ ଧରି ଘଣ୍ଟା ଘଣ୍ଟା କଥା ହେଇ ବି ପ୍ରେମ ଜଣେଇପାରୁନାହାନ୍ତି । ରେଷ୍ଟୋରାଁ ଓ ସପିଙ୍ଗ-ମଲକୁ ଯାଇ ଦେଖନ୍ତୁ, ପୁଅ ଝିଅକୁ ଖାଇବାକୁ ଦେଉଚି ତ ଝିଅ ପୁଅ ପାଇଁ ଗିଫ୍ଟ କିଣୁଚି । ପ୍ରେମ ପାଇଁ ଏତେ କଥା କରି ମଧ୍ୟ ପ୍ରେମ ଜଣେଇ ହେଉନି ।

ସାହିତ୍ୟରେ ପ୍ରେମ ଜଣେଇବା ପାଇଁ କ'ଣ ନାହିଁ କ'ଣ କରାଯାଇଛି । ରାଧାନାଥ ରାୟଙ୍କ ନନ୍ଦିକେଶ୍ୱରୀ କାବ୍ୟ ଆପଣ ପଢ଼ିଥିବେ । ସୁବର୍ଣ୍ଣ କେଶରୀଙ୍କ ଉପରେ ଚୋଳଗଙ୍ଗ ଆକ୍ରମଣ କରିଚନ୍ତି । ସୁବର୍ଣ୍ଣ କେଶରୀଙ୍କ ପାଖରେ ଜୈତ୍ରମଣି ଥିବାରୁ ଯୋଦ୍ଧା ଚୋଳଗଙ୍ଗ ତାଙ୍କୁ ମାରିପାରି ନାହାନ୍ତି । ସୁବର୍ଣ୍ଣ କେଶରୀଙ୍କ ଝିଅ ନନ୍ଦିକା ଲୁଚି ଲୁଚି ଯୁଦ୍ଧ ଦେଖୁଥିଲେ । ଚୋଳଗଙ୍ଗଙ୍କ ବୀରତ୍ୱ ଓ ପୌରୁଷରେ ସେ ବିମୋହିତ ହେଇ ପ୍ରେମରେ ପଡ଼ିଗଲେ । ରାତି ଅଧରେ ବାପାଙ୍କ ଜୈତ୍ରମଣି ଚୋରି କରି ଚୋଳଗଙ୍ଗଙ୍କ ଶିବିରରେ ପହଞ୍ଚିଲେ ପ୍ରେମ ନିବେଦନ ପାଇଁ । ଚୋଳଗଙ୍ଗ ଜୈତ୍ରମଣି ତ ନେଇଗଲେ; କିନ୍ତୁ ଶୃଙ୍ଖଳା ପ୍ରେମରେ ପହଁରୁ ନଥିବା ଚୋଳଗଙ୍ଗ ନନ୍ଦିକାଙ୍କୁ ଫେରେଇ ଦେଲେ । ଯିଏ ପ୍ରେମ ପାଇଁ ନିଜ ବାପା, ଜାତି ଆଉ ଦେଶକୁ ଧୋକା ଦେଇପାରେ ସିଏ ଯେ କାଲି ପ୍ରେମିକକୁ ଧୋକା ନଦେବ ସେ କଥା କିଏ କହିବ ? ପ୍ରେମ ଜଣାଇବାରେ ବିଫଳ ହୋଇଥିବା ନନ୍ଦିକା ଶେଷରେ ହୀରାମୁଦି ଚାଟି ମରିଗଲେ ।

ନନ୍ଦିକା ସିନା ମରିଗଲେ; କିନ୍ତୁ ଏବେ ବି ନନ୍ଦିକେଶ୍ୱରୀମାନେ ମରିନାହାନ୍ତି । ଆଇଏସ୍‌ଆଇ ଅଧିକାରୀଙ୍କ ପ୍ରେମରେ ପଡ଼ି ମାଧୁରୀମାନେ ଦେଶର ଦଲିଲକୁ ବିକିଦେଉଚନ୍ତି । ଏବେ ବି କ'ଣ ଆପଣ କହିବେ ଯେ ବିନା ଛୁଆଁ, ବିନା କୁହା, ବିନା ଦିଆ-ଥୁଆଁରେ ପ୍ରେମ ଜଣେଇ ହୁଏ ବୋଲି ।

ତେବେ ଅନ୍ଧ, ମୂକ, ବଧିର ଝିଅଟିକୁ ପୁଅଟି କମିତି ପ୍ରେମ ଜଣାଇବ ତା'ର ସନ୍ତୋଷଜନକ ଉତ୍ତର ଅପକ୍ଷାରେ ରହିଲୁ ।

(ମାଧୁରୀ ନାମ୍ନୀ ଜଣେ ଆଇ.ଏ.ଏସ୍ ଅଫିସର୍ ଜଣେ ଆଇଏସ୍‌ଆଇ ଏଜେଣ୍ଟଙ୍କ ପ୍ରେମରେ ପଡ଼ି ଦେଶର ଗୁପ୍ତ ଦଲିଲ୍ ଦେଇ ଦେଇଥିବା ଖବର ପରେ ଲିଖିତ )



# ବାଦ

ଗୋଟାଏ ମତ, ସିଦ୍ଧାନ୍ତ ବା ବିଚାରଧାରାକୁ ବାଦ ବା ଇଜିମ୍ କୁହାଯାଏ । ଏବେ ଆମ ଦେଶରେ ମନୁବାଦଠୁ ମାଓବାଦଯାଏ ବହୁ ବାଦ ଚାଲିଛି । ହେଲେ ଏଇ ବାଦ ବୋଇଲେ ଆମ ଦେଶବାସୀ କ'ଣ ବୁଝନ୍ତି ? ଆମ ଦେଶରେ ଏଇ ବାଦଗୁଡ଼ାକ କେମିତି କ'ଣ ଚାଲିଚି ? ଏସବୁର ଉତ୍ତର ଖୋଜୁ ଖୋଜୁ ଆମେ ଏକ ମଜାଦାର ଉତ୍ତର ପାଇଥିଲୁ 'ରବିବାର ସମାଜ'ର 'ହସକଥା'ରୁ ।

କିଛି ବନ୍ଧୁ ମୁଗଲ୍ ସରେଇରୁ ଦିଲ୍ଲୀ ଯାଉଥିଲେ ଟ୍ରେନ୍‌ରେ । ଯିବା ବାଟରେ ସେମାନେ ବାଦ ସମ୍ପର୍କରେ ଚର୍ଚ୍ଚା ଆରମ୍ଭ କଲେ । ସାମ୍ୟବାଦ, ସମାଜବାଦରୁ ମାଓବାଦ ଯାଏ ସବୁ ବାଦ ଉପରେ ଚର୍ଚ୍ଚା ଚାଲିଲା । ପାଖ ବର୍ଥରେ ଢୁଲଉଥିବା ଜଣେ ସ୍ତ୍ରୀଲୋକ ହଠାତ କହିଲେ- ଭାଇ ! ଆପଣ ତ ସବୁବାଦ ଜାଣିଛନ୍ତି । ଆହ୍ଲାବାଦଟା ଯେତେବେଳେ ଆସିବ ମୋତେ ଉଠେଇଦେବେ ।

କୁହାଯାଏ, ଏ ସଭ୍ୟ ଦୁନିଆରେ ପ୍ରତିଟି ମଣିଷ କୌଣସି ନା କୌଣସି ବାଦରେ ବନ୍ଧା । ଏ ସ୍ତ୍ରୀ ଲୋକଜଣକ କେମିତି ଏ ବାଦର ଅର୍ଥ ବୁଝିପାରିଲେନାହିଁ କେଜାଣି ? ମୁଁ ଏକଥାଟି କହିଲାବେଳେ ମୋ' ଘରଣୀ କହିଲେ - ଦେଖୁନ, ମୋ' ସାନଭଉଣୀଟି ରୋଷେଇବାସ, ଟିଭି ସିରିଏଲ ଛାଡ଼ିଦେଲେ କୋଉ କଥାରେ ମୁଣ୍ଡ ପୁରାଏନି । ସେ କୋଉ ବାଦର ମାନେ କ'ଣ ବୁଝିବ ? ମୁଁ ହସିଦେଇ ଉତ୍ତର ଦେଲି- ତମ ଭାଇ ସାବିତ୍ରୀରେ ତମପାଇଁ ଯୋଉ ଅଧିକା ଦାମ୍‌ର ଶାଢ଼ି ଆଣିଲା, ତମ ଭଉଣୀ କେମିତି ରବେଇଖବେଇ ହେଉଥିଲା । ୟାଙ୍କୁ ହିଁ ତ ବାଦ କୁହାଯାଏ । ଆଉ ଆମ ଦେଶରେ ଏମିତିଆ ବାଦ ଚାଲିଛି ।

ଉତ୍ତର ରାଜ୍ୟରେ ଜଣେ ନେତ୍ରୀ ସବୁବେଳେ ମାନବବାଦର ଦ୍ୱାହି ଦିଅନ୍ତି । ମନୁବାଦୀଙ୍କୁ ଗାଳି ଦିଅନ୍ତି । ଦଳିତଙ୍କର ଉତ୍ଥାନ କଥା କହନ୍ତି । ଆଉ ଦଳିତଙ୍କ ପାଇଁ ସେ କରିଚନ୍ତି କ'ଣ ? ବ୍ରାହ୍ମଣ, କରଣ, କ୍ଷତ୍ରୀୟଙ୍କ ଚଉଦ ପୁରୁଷଙ୍କୁ

ସଭାସମିତିରେ ଉଘାଳୁଚନ୍ତି । ଯାକୁ ଯଦି ଆମେ ବାଦ ବୋଲି କହିବା, ତମ ଭଉଣୀଙ୍କ ତମପ୍ରତି ଇର୍ଷାଟା ବାଦ ହେବନାହିଁ କେମିତି ? ସାମ୍ୟବାଦର କଥା କହୁଥିବା କିଛି କର୍ମୀଙ୍କୁ ଆମେ ଭେଟିଚୁ । ସବୁବେଳେ ଜଳାପୋଡ଼ା, ଲଢ଼େଇ-ଧର୍ମଘଟର ସ୍ଲୋଗାନ ଦିଅନ୍ତି । ଧର୍ମଘଟ କରି ଜାତୀୟ ସମ୍ପତ୍ତି ନଷ୍ଟ କରନ୍ତି । ସବୁ ମଣିଷ ସମାନ ବୋଲି ରଡ଼ି ଛାଡ଼ନ୍ତି । ତାଙ୍କ ଭିତିରି ବିଚାର ହେଉଚି-ତମର ଯଦି ଏକ ମହଲା ଅଛି ଆଉ ସାମ୍ନାବାଲାର ଚାରି ମହଲା, ତେବେ ତମେ ଆଉ ତିନିମହଲା ନଗଢ଼ି ସାମ୍ନାବାଲାର ତିନିମହଲାକୁ ଭାଙ୍ଗିଦିଅ । ଏମିତିଆ ବାଦଗୁଡ଼ାକ ମୋ' ଶାଳୀର ବାଦଠୁ କୋଉ ଗୁଣରେ କମ୍ ?

ରାଜନୀତି କରିବାକୁ ହେଲେ, ରାଜଗାଦି ଜାବୁଡ଼ିବାକୁ ହେଲେ ଏଭଳି କିଛି ବାଦକୁ ଧରିବାକୁ ପଡ଼ିବ । ଥରେ ଜଣେ ସମାଜବାଦୀ ନେତାଙ୍କୁ ପଚରାହେଲା- ଆଜ୍ଞା ଆପଣ ସମାଜବାଦରେ ବିଶ୍ୱାସ କରନ୍ତି ? ହିନ୍ଦୀଭାଷୀ ନେତାଜଣକ ଉତ୍ତରଦେଲେ- ହାଁ, ପହଲେ ମେଁ, ସମାଜ ବାଦ ମେଁ । ଆଗେ ନିଜର ସ୍ୱାର୍ଥ, ପଛରେ ସମାଜ ।

ଏବେ ଆମ ଦେଶରେ ମାଓବାଦ ଭାରି ଜୋର୍‌ରେ ମୁଣ୍ଡ ଟେକିଛି । ମାଓଙ୍କୁ ଆମେ ବୁଝୁ କି ନବୁଝୁ ବାଦ ଛାଡୁନାହୁଁ । ଆଗେ ପ୍ରଶାସକ, ପୁଲିସି, ନେତାମନ୍ତ୍ରୀଙ୍କୁ ଟାର୍ଗେଟ କରୁଥିଲୁ । ଏବେ ନିରୀହ ଲୋକଙ୍କୁ ମାରିବା ଆରମ୍ଭ କରିଚୁ ।

ଏତେଗୁଡ଼ାଏ ବାଦର ଉଦାହରଣ ପରେ ବାଦ'ର ଅର୍ଥ ଆମେ ବୁଝିଗଲୁ । ଆଜିକାଲି ବାଦ'ର ଏକମାତ୍ର ଅର୍ଥ - ଅନ୍ୟକୁ ଈର୍ଷା କରିବା, ହିଂସା କରିବା ବା ତଳିତଳାନ୍ତ କରିଦେବା । ବାଦର ଅର୍ଥ ଯଦି ଏଇଭଳି ହୁଏ, ତେବେ ସେହି ସ୍ତ୍ରୀଲୋକ ପରି ମାନବବାଦ, ମାଓବାଦ ବଦଳରେ ବାଦକୁ ଆହ୍ଲାବାଦ କି ହାଇଦରାବାଦ ଅର୍ଥରେ ବୁଝିବା ବରଂ ସମାଜ ପାଇଁ ଭଲ ।



# ଚୋରି ଖବର

ଦେହ ଭଲନାହିଁ । ଚାଦର ଖଣ୍ଡେ ଘୋଡ଼ିହେଇ ଘର ବାରଣ୍ଡାରେ ବସିଚି । ଦାଣ୍ଡରେ ଆଦିବାସୀ ଲୋକଟାଏ ଭାରକରି ମହୁଫେଣା, ତାଳପତ୍ର ସହ ହାଣ୍ଡିଟାଏ ଧରି ପାଟି କରି ଚାଲିଚି- ଲେହୁ...... ଲେହୁ........ ଲେହୁ........ । ତାକୁ ଅଟକେଇ ଘରଣୀକି ଡାକ ଛାଡ଼ିଲି - ଆସ ଦେଖିବ ମହୁ ଆଣିଚି ବୋଧେ । ଘରଣୀଙ୍କ ହାତକୁ ହାଣ୍ଡିରୁ ପଳାଏ ମହୁ ବଢ଼େଇ ଲୋକଟା କହିଲା - ବାବୁ ବସିଚି, ବସିଥାଉ । ତାକୁ ଜରହେଇଚନ୍ତି ତୁଇ ଠୁପେ ଚାଖ୍ । ଖାଣ୍ଟି ବାଘା ମହୁ ।

ତା' କଥା ଶୁଣି ମତେ ହସ ମାଡ଼ିଲା । ଘରଣୀକି କହିଲି - ନିହାତି ସରଳ ଲୋକଟା । ଜରକୁ ଆଜ୍ଞା-ଆପଣ, ବାବୁକୁ ତୁ-ତାକର କରୁଚି । ମହୁକୁ ମହୁ କହିପାରୁନାହିଁ । ଠକିବ ନାହିଁ, ଏକାବେଳେ କିଲେ ରଖିଦିଅ ।

ସେଦିନ ସଞ୍ଜବେଳେ କୁଆଡ଼େ ସେଇ ଲୋକଟା ଆମ ସାଇ ସ୍କୁଲ ପଡ଼ିଆରେ ମହୁ ତିଆରି କରୁଥିଲା । ବଜାରରୁ ଚିନି ଆଣି କେମିକାଲ ମିଶାଇ କଡ଼େଇ ଦିହରେ ଗରମ କରୁଥିଲା । ସାଇ ପିଲାଙ୍କ ହାତରେ ଧରାପଡ଼ି ଗୁଡ଼ାଏ କୋରା ଖାଇଚି । ମୋ ପାଖକୁ ଖବର ପହଞ୍ଚିବା ପରେ ମୁଁ ପିଲାଙ୍କୁ କହିଲି - ବାବୁରେ । ଏଇଟା ନୂଆ କଥା ନୁହଁ । ଆମେ ତ ଗାଈ ଘୁଷୁରୀଙ୍କ ଚର୍ବିରେ ତିଆରି ଶୁଦ୍ଧ ଘିଅ ଖାଉଚୁ । ଅବଶ୍ୟ ନିରୀହ ଆଦିବାସୀ ବେଶରେ ଆସି ଲୋକଙ୍କୁ ଲୁଟିବାଟା ଭଲ କଥା ନୁହଁ । ତଥାପି, ଇୟେ ଦି ନୂଆ କଥା ନୁହଁ । ରାବଣ ଦିନେ ବାବାଜୀ ବେଶରେ ଆସି ସୀତା ଚୋରି କରିଥିଲା । ଆମ ନେତା, ମନ୍ତ୍ରୀ ଏବେ ଗାନ୍ଧୀ ଖଦଡ଼ ପିନ୍ଧି ଦେଶକୁ ଚୋରି କରୁଚନ୍ତି । ହେଲେ ତାଙ୍କ ଦିହରେ ହାତ ମାରିବାଟା ସହଜ ନୁହଁ । ଏଇ ସାଧାରଣ ଲୋକକୁ ବାଡ଼େଇବାଟା ଭାରି ସହଜ ।

ତା'ଛଡ଼ା ଚୋରି କରିବା ଓ ଠକିବା କାମରେ କେବଳ ସହରୀବାବୁଙ୍କ ଅଧିକାର ଅଛି, ଗାଁ ଲୋକେ ସେସବୁ ପାରନ୍ତି ନାହିଁ କି ଜାଣନ୍ତି ନାହିଁ; ଏଭଳି ଧାରଣା ଠିକ୍ ନୁହଁ । ଗୋଟେ ହସକଥା ଛଳରେ କଥାଟିକୁ ସହଜରେ ବୁଝି ହେବ । ଟଙ୍କା ପାଇଁ ଆଜିକାଲି ସମସ୍ତେ ସବୁକିଛି କରିପାରନ୍ତି । ଏପରିକି ନକଲି ଟଙ୍କା ବି ଲୋକ ଛାପି ଦେଉଚନ୍ତି । ଏଭଳି ଜଣେ ସହରୀବାବୁ ଛାପୁ ଛାପୁ ଭୁଲରେ ଚାଳିଶି ଟଙ୍କିଆ ନୋଟ୍ ଛାପିଦେଲେ । ତାକୁ ନେଇ କରିବେ କ'ଣ ? ଭାବିଲେ ମଫସଲକୁ ଯାଇ ଚଳେଇ ଦେବି । ସଞ୍ଜବେଳେ ଗୋଟାଏ ନିପଟ ମଫସଲ ଗାଁର ଦୋକାନୀକି ଟଙ୍କା ବଢ଼ାଇ କହିଲେ ବାବୁ ! ଏଇଟା ନୂଆ ଚାଳିଶି ଟଙ୍କିଆ ନୋଟ୍ ବାହାରିଚି, ୟାକୁ ଟିକିଏ ଭଙ୍ଗେଇ ଦେବ । ତତ୍‌କ୍ଷଣାତ୍ ଗାଁ ଲୋକଟା ସହରୀବାବୁଙ୍କ ହାତକୁ ୨୫ ଟଙ୍କିଆ ଆଉ ଗୋଟେ ୧୫ ଟଙ୍କିଆ ନୋଟ୍ ବଢ଼େଇଦେଲା ।

ଆଜ୍ଞା ! ସହରଠୁ ଗାଁ ଯାଏ କୋଉଠି ନା କୋଉଠି, କେହି ନା କେହି, କାହାକୁ ନା କାହାକୁ ସବୁବେଳେ ଠକିଚାଲିଚି, ନହେଲେ ଲୁଟିଚାଲିଚି । ଚୋରି, ଠକାମି ଆମ ସମାଜର ଗୋଟେ ନିତିଦିନିଆ ଦେହସୁଆ ଘଟଣା ହେଇଗଲାଣି । କୋଉଠି କାହା ଘରକୁ କିଏ ୧୫ କିଲିଆ ମାଛ ନେଇ, ବାବୁ ଗାଡ଼ି ମାଗିଚନ୍ତି କହି ଗାଡ଼ି ନେଇଗଲାଣି ତ କିଏ ମିଛ ଭୋଜିକୁ ନିମନ୍ତ୍ରଣ କରି କାହାଘରୁ ଗ୍ୟାସ୍ ଚୁଲାଠୁ ଆରମ୍ଭ କରି କଡ଼େଇ ଡେକଚି ଧରି ଛୁ ମାରିଲାଣି । ଆମ ଶରୀରରେ ଶ୍ୱାସ ପ୍ରଶ୍ୱାସ କ୍ରିୟା ଭଳି ଚୋରି ଡକାୟତି ବି ଆମ ସମାଜର ଏକ କ୍ରିୟା ପାଲଟି ଗଲାଣି । ପୁଲିସ ପ୍ରଶାସନଠୁ ଗଣମାଧ୍ୟମ ଯାଏ କାହା ପାଇଁ ଚୋରି ଆଉ ଘଟଣା ହୋଇ ରହିନାହିଁ ।

ଗୋଟିଏ ଅଙ୍ଗେନିଭା ଘଟଣା ସମ୍ପର୍କରେ କହୁଚି । ମୋ ପଡ଼ୋଶୀ ରଥବାବୁଙ୍କ ଘରୁ ଅଳଙ୍କାର ଚୋରି ହେଲା । ସେ ପୁଲିସରେ ଏତଲା ଦେଲେ, ପୁଲିସ ଏତଲା ରଖିଲା, ହାତଗୁଞ୍ଜା ନେଲା, କିନ୍ତୁ ଚୋର ଧରିଲା ନାହିଁ । ରଥବାବୁ ବଡ଼ ଅସହାୟ ହେଇ ମୋ ପାଖରେ ପହଞ୍ଚିଲେ ଓ କହିଲେ- ଜ୍ଞାନବାବୁ ! ଆପଣଙ୍କର ମିଡିଆବାଲା ଚିହ୍ନା, କାହାକୁ କହି ମୋ ଘର ଚୋରି ଖବରଟା ବାହାର କରାଇଦେଲେ ପୁଲିସ ଟିକେ ତତ୍ପର ହେଇଯା'ନ୍ତା । ମୁଁ ସାଙ୍ଗେ ସାଙ୍ଗେ ମୋର କେଇ ଜଣ ମିଡିଆ ବନ୍ଧୁଙ୍କୁ ଫୋନ କଲି । ସମସ୍ତଙ୍କ ପାଖରୁ ସେଇ ଉତ୍ତର - ଜ୍ଞାନବାବୁ ! ଚୋରି ଖବର

ଆଉ କ'ଣ ଖବର ହେଇ ଅଛି ? ତା'ଛଡ଼ା ଯେ ଚୋରି ଖବର ଛାପିଲେ ଆମ କାଗଜ ଓ ସମୟ ନିଅଣ୍ଟ ପଡ଼ିବ । ହଁ, ଆପଣଙ୍କ ଭଳି ନାଁକରା ଲୋକଙ୍କ ଘରୁ ଚୋରି ହେଲେ କହିବେ, ଖବରଟା ବାଢ଼େଇଦେବା ।

ରଥବାବୁଙ୍କୁ ମୋ ମୋବାଇଲ୍‌ର ଲାଉଡସ୍ପିକର ଦେଇ ମିଡିଆ ବନ୍ଧୁଙ୍କ ପ୍ରତିକ୍ରିୟା ଶୁଣାଉଥିଲି । ରଥବାବୁ ବୁଝିଗଲା ପରି କହିଲେ- ହଁ, ଆମେ କୋଉ ହେମାମାଳିନୀ କି ତେନ୍ଦୁଲକର ହେଇଚୁ ଯେ ଆମ ଘରୁ ଚୋରି ହେଲେ ପୁଲିସ ବ୍ୟସ୍ତ ହବ ଆଜ୍ଞା !

ଶେଷରେ ଏତିକି କହିବି, ହେମାମାଳିନୀ କୋଟିଏ ଟଙ୍କାର ଗହଣା ତିଆରି କରାଇବାକୁ ହେଲେ ତାଙ୍କୁ ୫ ମିନିଟ୍ ସମୟ ଲାଗିପାରେ; କିନ୍ତୁ ଆମ ଗାଁ ହେମଅପା କି ମାନିନୀ ଦେଇକୁ ନାକଗୁଣାଟେ ପାଇଁ ୨୦ ବର୍ଷ ଶାଗ, ପଖାଳ ଖାଇବାକୁ ପଡ଼ିଚି ।



## ପ୍ରଶଂସା

ଗାଛକୁ ସାର, ଛୁଆକୁ କ୍ଷୀର, ଗୋରୁକୁ ଦାନା ନମିଳିଲେ ସେମାନେ ଉଧେଇ ପାରନ୍ତି ନାହିଁ । ସେହିଭଳି ସାହିତ୍ୟ, ସଙ୍ଗୀତ, କଳାକୁ ଉଠେଇବା ପାଇଁ ପ୍ରଶଂସା ଟିକେ ଲୋଡ଼ା, ଯାହାର ଆଜିକାଲି ଘୋର ମଡ଼କ ପଡ଼ିଚି । ବିନା ସ୍ୱାର୍ଥରେ କେହି କାହାରିକି ପ୍ରଶଂସା ଟିକେ ବି କରିବାକୁ ପ୍ରସ୍ତୁତ ନୁହନ୍ତି । ମଙ୍ଗଳାବାଗ ଛକରେ ସେଦିନ ଅଶୋକ, ଆଲୋକ, ଦେବୀ ଆଉ କାଳିବାବୁଙ୍କ ସଙ୍ଗେ ଠିଆହେଇଥିଲି । ସ୍ୟାଡ୍ଡୁ ନଟ ସାହୁ ଆସି ପହଞ୍ଚି ସିଧାସଳଖ ମୋର ପ୍ରଶଂସା ଆରମ୍ଭ କରିଦେଲା - ଯାହା କହ, ଜ୍ଞାନବାବୁ ମଣିଷ ଭଳି ମଣିଷଟିଏ ! ସେଦିନ ରାତି ଅଧରେ ମେଡ଼ିକାଲ ଆସି ହଜାରେ ଟଙ୍କା ଯଦି ଦେଇନଥାନ୍ତେ ରୋଗୀର ଯେ କି ଅବସ୍ଥା ହେଇଥାନ୍ତା ! ଆଜିକାଲି ନିଜର ନିଦ ହଜେଇ, ଧନ ହରେଇ ପର ପାଇଁ କିଏ ଠିଆ ହେଉଚି ?

ମୁଁ ବଲବଲ ହେଇ ଚାହିଁଥାଏ ନଟିଆ ମୁହଁକୁ । ଯା'ପୂର୍ବରୁ ଦି'ଚାରିଥର ତା' ସଙ୍ଗେ ଦେଖାହେଇଚି । ଟଙ୍କା କି ସାହାଯ୍ୟ କଥା ସେ କେବେ ଉଠେଇନି । ଆଜି ହଠାତ୍ ଏମିତି ପ୍ରଶଂସା ବୁଝି ହେଲା ନାହିଁ । ଟିକିଏ ପରେ ଆଲୋକ ଆଉ ଦେବୀବାବୁ ଚାଲିଗଲା ପରେ ପାଖକୁ ଲାଗି ଆସି ସେ କହିଲା - ଆଜି ଆମ ଗାଁରୁ ଆଉ ଗୋଟେ ରୋଗୀ ଆସିଚି । ଆଉ ଦି'ଶ ଟଙ୍କା ହବ ?

ଆଉ ଦିନେ ଚହଟା ଛକରେ ଦେଖାହେଲେ ଆଚାର୍ଯ୍ୟବାବୁ । କହିଲେ- ଜ୍ଞାନବାବୁ ! ଆପଙ୍କ ଲେଖା ଏବେ 'ଶ୍ରୀମୁଖ'ରେ ବାହାରିଥିଲା । ଆମ ଅଫିସର ବନ୍ଧୁମାନେ ପଢ଼ି ଖୁବ୍ ତାରିଫ କରୁଥିଲେ । ଯା' କୁହନ୍ତୁ ଆପଣ ଆମ ସାଇର ଗର୍ବ ଏବଂ ଗୌରବ । ମୁଁ ଡରୁଥାଏ । ୟାଙ୍କର ମୋ ପାଖରେ ଆଉ କିଛି କାମ ନାଇଁ

ତ ! ସତକୁ ସତ ଟିକେ ପରେ ଆଚାର୍ଯ୍ୟ ବାବୁ ପଚାରିଲେ- ଆପଣ କୁଆଡ଼େ ବାହାରିଚନ୍ତି ? ମୁଁ କହିଲି, ଲିଙ୍କରୋଡ଼ । ଆଚାର୍ଯ୍ୟେ କହିଲେ- ଟିକେ ମଙ୍ଗଳାବାଗ ଦେଇ ବୁଲିଗଲେ ହୁଅନ୍ତାନି ? ମୋର ମଙ୍ଗଳାବାଗ ଯିବାର ଥିଲା ତ !

ଥରେ କବି ସମ୍ମିଳନୀରେ ଯାଇଥିଲୁ ପାରାଦ୍ୱୀପ । ସାଙ୍ଗରେ ସତ୍ୟ ଦାସ ଆଉ ମନୁଆ ରଥ । ସମ୍ମିଳନୀ ସରିଲା ପରେ ଆୟୋଜକ ଶ୍ରୀମାନ ଷଡ଼ଙ୍ଗୀ ଆଉ ପ୍ରବୀର ସାହୁ ଆମକୁ ନେଇଗଲେ ଗୋଟେ ହୋଟେଲକୁ । ଖାଇବା ଟେବୁଲରେ ସତ୍ୟ ଦାସ ଆଉ ମୋର ଭୂରି ଭୂରି ପ୍ରଶଂସା କଲେ । ୟା' ଭିତରେ ମନୁଆ ରଥ ହାତ ଧୋଇବା ପାଇଁ ଉଠି ବାହାରକୁ ଗଲେ । ଶ୍ରୀମାନ ଷଡ଼ଙ୍ଗୀ ମନୁଆକୁ ଇଙ୍ଗିତ କରି କହିଲେ - ସବୁ ଭଲ ହେଲା ଯେ ଏ ଲୋକଟା ବୋର କରିଦେଲା । କି ବାଜେ, ଫାଲତୁ କବିତା ସବୁ । ୟାକୁ ଆପଣ ସାଙ୍ଗରେ କାହିଁକି ଆଣିଥିଲେ ? କଥା ନସରୁଣୁ ମନୁଆ ରଥ ହାତଧୋଇ ଆମ ଆଡ଼କୁ ଆସୁଚନ୍ତି, କଥାକୁ ସେଇଠି ରଖିବା ପାଇଁ ମୁଁ ଶ୍ରୀମାନଙ୍କ ଜଙ୍ଘକୁ ଚିମୁଟି ଦେଲି । ଚତୁର ଶ୍ରୀମାନ ସାଙ୍ଗେ ସାଙ୍ଗେ ସ୍ୱର ବଦଳାଇ ମନୁଆ ରଥକୁ କହିଲେ - ଭାଇନା ! ଆପଣଙ୍କ ସମ୍ପାଦନାରେ 'ହାସ୍ୟବାଣୀ' ମୁଁ ନିୟମିତ ପଢ଼େ । ସେଥିରେ ପ୍ରଣୟ ଶୀର୍ଷକ ଲେଖାଟି ଆଜି ବି ମୋର କଣ୍ଠସ୍ଥ ଅଛି -

ଅରଖ ଖାଇକି ବିଷ ପରଖିବି/ ନୁହେଁ ମୁରୁଖ
ପ୍ରେମକରି ମୁହିଁ ଶିଖିବି ନାହିଁ ଗୋ/ ପ୍ରଣୟ ସୁଖ ।

ମୁଁ ଲକ୍ଷ୍ୟ କରୁଥାଏ ମନୁଆ ରଥଙ୍କ ଛାତିକୁ । ମତେ ଲାଗୁଥାଏ ଗର୍ବରେ ତାଙ୍କର ପଞ୍ଜାବୀର ବୋତାମ ଦୁଇଟା ଛିଣ୍ଡି ତଳେ ପଡ଼ିଯିବକି ! ରାତିରେ ଫେରିଲାବେଳେ ମନୁଆ ରଥ ବାଟରେ ଆଦୌ ଘୁମାଇ ନାହାନ୍ତି । ମୁଁ ଆଉ ସତ୍ୟ ଦାସ ଘୁମେଇ ପଡ଼ିଲାବେଳେ ଆମକୁ ଉଠେଇ ସେ କହୁଥିଲେ - ଯାହା କହ, ମୋ କବିତା ଲୋକଙ୍କୁ ଛୁଉଁଚି । ମୁଁ ଲୋକଙ୍କ ହୃଦୟରେ ଅଛି । ମନେ ମନେ ମୁଁ ଭାବୁଥାଏ, ହଁ ଅଧ ମିନିଟ୍ ଆଗରୁ ଟେବୁଲ ପାଖରେ ପହଞ୍ଚିଲେ ଜାଣିଥାନ୍ତେ ଲୋକଙ୍କ ହୃଦୟରେ ତମେ କେମିତି ଅଛ ।

ସବୁ ପ୍ରଶଂସାକୁ ମିଛ ମଣିବା ବି ଠିକ୍ ହେବ ନାହିଁ । ଏବେ ମୋ ପାଖକୁ ଚିଠି ଖଣ୍ଡେ ଆସିଥିଲା । ଲେଖାଥିଲା - ମହାଶୟ ! ଆପଣଙ୍କ ଲେଖା ମୁଁ ପଢ଼େ । ଖୁବ୍ ଭଲଲାଗେ । ଟିଭିରେ ବି ଦେଖେ । ଆପଣଙ୍କ ଆଖି, ଓଠ, ନାକ, ନିଶ ସମସ୍ତେ କଥା କହନ୍ତି... । ପଢୁ ପଢୁ ଛାତି ମୋର କୁଣ୍ଡେ ମୋଟ ହେଇଯାଇଥିଲା; ହେଲେ ଶେଷ ଧାଡ଼ି ପଢ଼ି ପୁଣି ସିଙ୍କୁଡ଼ିକି ଛୋଟ ହେଇଗଲା । ଶେଷ ଧାଡ଼ିରେ ଲେଖାଥିଲା - ଖରାପ ଅକ୍ଷର ପାଇଁ କ୍ଷମା କରିବେ । ପାଗଳଖାନାରେ କଲମ ମିଳୁନଥିବାରୁ କୋଇଲାରେ ଚିଠି ଲେଖିଚି ।

ଆଜ୍ଞା ! ବିନା ସ୍ୱାର୍ଥରେ ଅନ୍ୟକୁ ପ୍ରଶଂସା କରିବା ଲୋକର ସଂଜ୍ଞା ହିଁ ତ ଆଜି କାଲି 'ପାଗଳ'; ହେଲେ ସ୍ୱାର୍ଥପର ଲୋକଙ୍କୁ ନେଇ କଳା, ସଂସ୍କୃତି ବଞ୍ଚେନାହିଁ । ସଂସାରରେ ସାହିତ୍ୟ, ସଂସ୍କୃତି, କଳା ବଞ୍ଚି ରହିଚି ତ ଏଭଳି କିଛି ନିଃସ୍ୱାର୍ଥପର ପାଗଳଙ୍କ ପାଇଁ ।



# ଯୋଗ୍ୟ ପାତ୍ର

ଯୋଗ୍ୟ ପାତ୍ର ଜଣକର ନାଁ । ଶୁଣିଲା ବେଳକୁ ଅଡୁଆ ଅଡୁଆ ଲାଗୁଚି ନା ! କିନ୍ତୁ ବହୁ ଭାବିଚିନ୍ତି ଅନାମ ପାତ୍ର ତାଙ୍କ ପୁଅ ନାଁ ରଖିଚନ୍ତି ଯୋଗ୍ୟ ପାତ୍ର । ଅବଶ୍ୟ ବୁଦ୍ଧି ଉଧାର ଆଣିଚନ୍ତି ଅକ୍ଷୟ ସାହୁଙ୍କଠୁ । ପିଲା ବଡ଼ ହେଲେ କ'ଣ ହେଇ ପାରିବେ କି ନ ହେଇ ପାରିବେ ଏଣୁ ମୂଳରୁ ଚାରି ପିଲାଙ୍କ ନାଁ ଦେଇଦେଲେ ଡାକ୍ତର ସାହୁ, ଓକିଲ ସାହୁ, ହାକିମ ସାହୁ ଓ ଇଞ୍ଜିନିୟର ସାହୁ । ଆଜିକାଲି ବହୁ ଚାକିରି ଭଳି ବର ବଜାରରେ ଯୋଗ୍ୟ ପାତ୍ରଟିଏ ଖୋଜି ପାଇବା କଷ୍ଟକର । ଅନାମ ପାତ୍ର ଦୂରଦ୍ରଷ୍ଟା ଥିଲେ ବୋଲି ଆଗରୁ ପୁଅର ନାଁ ରଖିଦେଲେ ଯୋଗ୍ୟ ପାତ୍ର ।

ଆଗେ ପାତ୍ରୀ ଖୋଜା ହେଉଥିଲା । ପାତ୍ରୀର ରଂଗ, ବୟସ, ଚରିତ୍ର ଆଦିର ଭିତିରିଆ ଖବର ନିଆଯାଉଥିଲା । ପାତ୍ର ସମ୍ପର୍କରେ କିନ୍ତୁ ଏସବୁ କେହି ପଚାରୁନଥିଲେ । ପୁଅର ରଂଗ କେମିତି ? ଏଇ ପ୍ରଶ୍ନ ଯଦି କିଏ ପଚାରି ଦେଉଥିଲା ଗୁରୁଜନମାନେ ବିଗିଡ଼ି ଯାଉଥିଲେ । ଆରେ ! ପୁଅ ପିଲାଟେ, ତା'ର ପୁଣି ରଂଗ ଗୋଟେ କ'ଣ ? ପୁଅଟା ଟିକେ ବୟସ୍କ, ବୁଢ଼ାଳିଆ ଲାଗୁଚି । ଏଭଳି କଥା କହିଲେ ଶୁଣିବାକୁ ମିଳୁଥିଲା- ପୁଅ ପିଲାଟା କ'ଣ ଲାଉ ନା କଖାରୁ ହୋଇଚି ଯେ ବୁଢ଼ା ହେଇଯିବ ? ଆଉ ପୁଅର ଚରିତ୍ରକୁ ତ ପୂରାପୂରି ଅଣଦେଖା କରାଯାଉଥିଲା । ପୁଅପିଲା ପିତଳ ହାଣ୍ଡି, ଧୋଇ ମାଜିଦେଲେ ପୁଣି ଚିକ୍କଣ । ଯାଙ୍କ ଦେହରେ ମଇଳା ଲାଗେନି ।

ଏବେ ସମୟ ବଦଳି ଯାଇଚି । ଦୀର୍ଘଦିନର ଝିଅମରା ଅଭିଯାନ ପରେ ବର ବଜାରରେ ବରଙ୍କ ଭାଉ କମିବାରେ ଲାଗିଚି । ଝିଅମାନେ ପାଠୋଇ

ହେଲାପରେ ବର ବଜାରରେ ବରପାତ୍ରଙ୍କର ଏକଚାଟିଆ ବେପାର ବନ୍ଦ ହେବାକୁ ବସିଲାଣି । ଆଗଭଳି ଆଉ ଆଖିବୁଜି କେହି ବରପାତ୍ରକୁ ଗ୍ରହଣ କରୁନାହାନ୍ତି । ଏବେ ପାତ୍ର ବି ବଛାବଛି ଆରମ୍ଭ ହେଇଗଲାଣି । ସେ ଦୃଷ୍ଟିରୁ ଅନାମ ପାତ୍ରମାନେ ନିଜ ପୁଅକୁ ଯୋଗ୍ୟ ପାତ୍ର କରି ବର ବଜାରକୁ ଛାଡ଼ିବାର ସମୟ ଆସିଚି ।

ତେବେ ପାତ୍ରର କୋଉ ଯୋଗ୍ୟତାକୁ ଏବେ ବେଶୀ ପ୍ରାଧାନ୍ୟ ଦିଆଯାଉଚି ? ବଂଶ ପରମ୍ପରା, ଆଭିଜାତ୍ୟସମ୍ପନ୍ନ ଯୌଥ ପରିବାର ପିଲାକୁ ଆଉ ଯୋଗ୍ୟ ପାତ୍ର ଭାବେ ଗ୍ରହଣ କରାଯାଉନାହିଁ । ପୈତୃକ ସମ୍ପତ୍ତି, ଚାରି ବାଟି ଜମି, ବର ବଜାରରେ ଆଜି ମୂଲ୍ୟହୀନ । ପରାନ୍ନଂ ସାଲାରୀକୁ ଯୋଗ୍ୟତାର ପ୍ରଥମ ମାପକାଠି ଭାବେ ଧରାଯାଉଚି । ଭାଇ, ଭଉଣୀ, ବାପା-ମାଆହୀନ ପିଲାକୁ ଆଜିକାଲି ଯୋଗ୍ୟ ପାତ୍ର ଭାବେ ଗ୍ରହଣ କରାଯାଉଚି । ମାଆଟେ, ପୁଅଟେ; ନହେଲେ ବାପାଟେ ପୁଅଟେ ପରିବାର ପାତ୍ରୀଘର ପାଇଁ ପ୍ରଥମ ପସନ୍ଦ ଭାବେ ଧରାଯାଉଚି । ନତୁବା ପୁଅ ଯଦି ବିଦେଶରେ ଅଛି, ସେଠାକୁ ବାପା-ମାଆ ଯାଇ ସ୍ଥାୟୀ ଭାବେ ବାସ କରିବାର ସମ୍ଭାବନା ବି ନାହିଁ, ସେଇ ପାତ୍ର ଆଜିର ବର ବଜାରରେ ସବୁଠୁ ଯୋଗ୍ୟପାତ୍ର । ଏହାଠୁ ଆଉ ଟିକେ ତଳକୁ ଖସିଲେ ପୁଅଟି ନିଜର ବିଧବା ମାଆ ବା ବିଧୁର ବାପାଙ୍କୁ ଯଦି ନେଇ ପାଖରେ ରଖିଚନ୍ତି ସେଥିରେ ବୁଝାମଣା କରିବାରେ ପାତ୍ରୀଘରର କିଛି ଅସୁବିଧା ନାହିଁ, କାରଣ ପାତ୍ରୀଘର ବିଚାର କରୁଛନ୍ତି ତାଙ୍କ ଝିଅ ଗଲେ ପୁଅଠାରୁ ବାପା କି ମାଆ ଅଲଗା ହେଇ ଜରାନିବାସକୁ ବଳେ ଚାଲିଯିବେନି ।

ଅଜ୍ଞାନ ବିଚାର ମାଧ୍ୟମରେ ପୁଅକୁ ଯୋଗ୍ୟପାତ୍ର କରିବାକୁ ଚାହୁଁଥିବା ଅନାମ ପାତ୍ରମାନଙ୍କୁ ଆମ୍ଭେ କେବେ ପରାମର୍ଶ ଦେବୁ ନାହିଁ ଯେ ଆପଣ ଇହଧାମ ତ୍ୟାଗ କରିଦିଅନ୍ତୁ; କିନ୍ତୁ ଏତିକି ନିଶ୍ଚୟ କହିବୁ- ଛାତିକୁ ପଥର କରି ଅତି ଆଦର ଓ ଯତ୍ନରେ ବଢ଼ାଇଥିବା ପିଲାକୁ ଯଥାସମ୍ଭବ ନିଜଠୁ ଦୂରେଇ ରଖନ୍ତୁ ଓ ପାତ୍ରୀ ଘରକୁ ବୁଝାଇ ଦିଅନ୍ତୁ ଯେ ପିଲା ସହିତ ଆପଣଙ୍କର ଆର୍ଥିକ ସମ୍ପର୍କ କିଛି ନାହିଁ । ତା' ହେଲେ ଯାଇ ବର ବଜାରରେ ଆପଣଙ୍କ ପିଲା ଯୋଗ୍ୟ ପାତ୍ର ଭାବେ ଗଣା ହେବ ।



# ଆତ୍ମା ପାଇଁ ଜମିଜମା

ଆଜିକାଲି ଲୋକେ ଆଉ ଚାଲୁନାହାନ୍ତି । ସମସ୍ତେ ଖାଲି ଦଉଡୁଚନ୍ତି । ଥୋକେ ମୁଠେ ଖାଦ୍ୟ ପାଇଁ ଦଉଡୁଚନ୍ତି ତ ଆଉ ଥୋକେ ଖାଇଥିବା ଖାଦ୍ୟକୁ ଜୀର୍ଣ୍ଣ କରିବାପାଇଁ ଦଉଡୁଚନ୍ତି । ଏ ଦୁଇ କିସମର ଲୋକଙ୍କୁ ଛାଡ଼ିଦେଲେ ଆଉ ଏକ ତୃତୀୟ କିସମର ଲୋକ ଅଛନ୍ତି । ସେମାନଙ୍କର ଖାଦ୍ୟ ଚିନ୍ତା ନାହିଁ । ପାଖରେ ପ୍ରଚୁର ଖାଦ୍ୟ ଥିଲେ ବି ପେଟଭରି ଖାଆନ୍ତି ନାହିଁ । ତଥାପି ଏମାନେ ଦଉଡୁଥାନ୍ତି ଚଉଦ ପୁରୁଷ ଲାଗି ସମ୍ପତ୍ତି ଠୁଳ କରିବା ପାଇଁ ।

ଜୀବନସାରା ମାପିଚୁପି ଜୀବନ ଜିଉଁଥିବା ଏ ତୃତୀୟ କିସମର ଲୋକ ଜଣେ ଦେଖାହେଇଗଲେ ଜୋତା ଦୋକାନରେ । ତାଙ୍କର ଦୁଇପୁଅଙ୍କ ପାଇଁ ଜୋତା କିଣୁଚନ୍ତି । ବଡ଼ପୁଅ ପାଦ ମାପ ୬ ନମ୍ବର ଓ ସାନପୁଅର ୫ ନମ୍ବର । ଭଦ୍ରଲୋକ ବଡ଼ପାଇଁ ୭ ନମ୍ବର ଓ ସାନପାଇଁ ୬ ନମ୍ବର ଚପଲ କିଣିଲେ । କିଣିବା ଉଚିତ ମଧ୍ୟ । ପିଲା ସାଇଁସାଇଁ ହେଇ ବଢୁଚନ୍ତି । ବଡ଼ ନକିଣିଲେ କେଇ ଦିନରେ ଚପଲ ଛୋଟ ହେଇଯିବ । ପିଲାଙ୍କ ଚପଲ କିଣା ସରିବା ପରେ ତାଙ୍କ ଘରଣୀ କହିଲେ- 'ହଇ ହେ ! ତମ ଚପଲ ଛିଣ୍ଡିଗଲାଣି, ତମପାଇଁ ବି ହଳେ କିଣିଦେଉନ ?'

ଭଦ୍ରଲୋକ ବଡ଼ ସନ୍ତର୍ପଣରେ ଟୁଲ୍ ଉପରେ ବସି ପାଦମପା ଯନ୍ତ୍ରରେ ପାଦ ଥୋଇଲେ । ତାଙ୍କ ପାଦମାପ ୭ ନମ୍ବର ବୋଲି କହି ଦୋକାନୀ ଚପଲ ଆଣିବାକୁ ଗଲା । ଭଦ୍ର ଲୋକ କହିଲେ, 'ଭାଇ ! ମତେ ଗୋଟେ ୮ ନମ୍ବର ଚପଲ ଦବ ।' ମୁଁ ମୋ ହସକୁ ରୋକି ପାରିଲି ନାହିଁ । ମୁହଁ ଖୋଲି କହିଦେଲି - 'ଆଜ୍ଞା ! ପିଲାଙ୍କର ଏଇଟା ବଢ଼ିବା ବୟସ । ତାଙ୍କ ପାଇଁ ବଡ଼ ଚପଲ ନେଲେ, କିଛି କଥା ନାହିଁ । ଆପଣଙ୍କୁ ପରା ପଚାଶ ଟପିଲାଣି, ଆପଣଙ୍କ ପାଦ ଆଉ କ'ଣ ବଢ଼ିବ ? ଭିବଷ୍ୟତ ଚିନ୍ତା କରିବା ଭଲ କଥା । ବଢ଼ିଲା ପାଦ ପାଇଁ ବଡ଼ ଚପଲ କିଣିବା ନିହାତି ଜରୁରୀ; ହେଲେ ଥମିଲା ପାଦ ପାଇଁ ଏତେ ଚିନ୍ତା କାହିଁକି ? ଏ

ପାଦ କେଇଦିନ ପରେ ପୂରା ଥମିଯିବ, ଆଉ କୋଉଠି ଚାରିହାତ ମାଟି ଖୋଜିବ ମିଶିଯିବା ପାଇଁ । ସେଥିପାଇଁ ଏତେ ମୋହ କାହିଁକି ?

ଭଦ୍ରଲୋକ କିଛି ସମୟ ଚୁପ୍ ରହିଲେ । ଟିକେ ଚିନ୍ତାକରି କହିଲେ, 'ଜ୍ଞାନବାବୁ ! ଆପଣ ବ୍ୟଙ୍ଗ ଛଳରେ ଜୀବନର ବଡ଼ ଗହୀରିଆ କଥାଟେ କହିଦେଲେ । ହେଲେ ଆମ ଭଳି ସାଧାରଣ ଲୋକଙ୍କୁ ଏକଥା ନକହି, ଯଦି ଏ ଦେଶର ନେତା ମନ୍ତ୍ରୀଙ୍କୁ ଏ ମରମଭେଦୀ କଥାଟା ବୁଝେଇ ଦିଅନ୍ତେ; ତେବେ ଦେଶର ହିତ ହୁଅନ୍ତା ।

ମଣିଷ ଘରଟେ କରିବା ପାଇଁ ଗୁଣ୍ଠେ କି ଦି'ଗୁଣ୍ଠ ଜାଗା ଦରକାର । ଚଳିବା ପାଇଁ ଦି'ଚାରି ବଖରା ହେଲେ ଯଥେଷ୍ଟ । ହେଲେ ଏ ଦେଶର ନେତା-ମନ୍ତ୍ରୀ ଶହଶହ ଏକର ଜମି ଲିଜ୍‌ରେ ନେଇ ପୁଅ ନାତି, ଚଉଦପୁରୁଷପାଇଁ ଜାଗାବାଡ଼ି ରଖିଦେଇ ଯାଉଚନ୍ତି । କଟକ, ଭୁବନେଶ୍ୱର, ପୁରୀ ସବୁଠି କୋଠାବାଡ଼ି । ଜୀବଦ୍ଦଶାରେ ତ ଯାହା କରିଗଲେ କରିଗଲେ, ମଲାପରେ ବି ଏମାନଙ୍କର ଆତ୍ମା ପାଇଁ ଜମିଜମାର ଅଭାବ ନାହିଁ । କେହି କେହି ମଲାପୂର୍ବରୁ ନିଜ ଆତ୍ମା ପାଇଁ ଜାଗା ସଂରକ୍ଷଣର ବ୍ୟବସ୍ଥା ମଧ୍ୟ କରୁଚନ୍ତି । ମଶାଣିରେ ଏମାନଙ୍କର ଆତ୍ମା ବି ଅଧା ଜାଗା ମାଡ଼ିବସୁଚି । ମଶାଣି ଜବରଦଖଲ କଲେ କଲେ ସେତିକିରେ ଆତ୍ମା ଶାନ୍ତି ପାଇଲାନାହିଁ ଯେ ଚେଲାଚାମଣ୍ଡା ଓ ପୁଅ ପୁତୁରାଙ୍କୁ ଧରି ରାସ୍ତାକଡ଼, ଛକ, ପାର୍କ, କଲେଜ ଓ ସର୍ବସାଧାରଣ ଅନୁଷ୍ଠାନକୁ ମଧ୍ୟ ମାଡ଼ିବସିଲେଣି ।

ସ୍ୱର୍ଗତ ହାଡ଼ିବନ୍ଧୁବାବୁ ଏଇମିତି ଜଣେ ଆତ୍ମା-ବିଳାସୀ ଲୋକ । ତାଙ୍କ ମୃତ୍ୟୁପରେ ତାଙ୍କରି ନାଁରେ ହାଡ଼ିବନ୍ଧୁ ୟୁନିଭର୍ସିଟି ଅଫ ଟେକ୍ନୋଲୋଜି(ଏଚବିୟୁଟି), ହାଡ଼ିବନ୍ଧୁ ଉଦ୍ୟାନ, ହାଡ଼ିବନ୍ଧୁ ମାର୍ଗ, ହାଡ଼ିବନ୍ଧୁ ଛକ ତିଆରି ହେଲା । ଯଦି ଏଭଳି ପ୍ରକ୍ରିୟା ଜାରି ରହେ; ତେବେ ହାଡ଼ିବନ୍ଧୁଙ୍କ ଆତ୍ମାର ଦୃଷ୍ଟି ପଡ଼ିବ ବଙ୍ଗୋପସାଗର ଉପରେ ଏବଂ କିଛିଦିନ ପରେ ବଙ୍ଗୋପସାଗରରୁ ଖଣ୍ଡେ 'ହାଡ଼ିବନ୍ଧୁ ଉପସାଗର' ନାମ ଧାରଣ କରିଥିବ ।



# ଟାର୍ଗେଟ

**ଚ**ନ୍ଦ୍ରମଣି ବାବୁ କହିଲେ- ଜ୍ଞାନ ବାବୁ ! ଦାମ୍ ବଢ଼ିଗଲା ।

ମୁଁ ବୁଝିପାରିଲି ନାହିଁ । ଏବେ ତ ବଜେଟ୍ ଫଜେଟ୍ ନାଇଁ, ଏଣେ ଇଲେକ୍ସନ ଚାଲିଚି । ତା'ହେଲେ କା'ର ଦାମ୍ ବଢ଼ିଲା ? ଚନ୍ଦ୍ରମଣିବାବୁ ପୁଣି ହସିକି କହିଲେ- ମୋ ମୁଣ୍ଡର ଦାମ୍ ବଢ଼ିଗଲା । ଆଜି ଆସିଲାବେଳେ ତିନି ତିନିଟା ଜାଗାରେ ଧମକାଣ- ବାବୁ ! ମୁଣ୍ଡରେ ହେଲମେଟ୍ ପିନ୍ଧୁନ କାହିଁକି ?

ଆଜ୍ଞା ! ଆଗରୁ ବି ମୁଣ୍ଡର ଦାମ ଥିଲା । ୪/୫ ଦିନରେ ଥରେ କୋଉଠି କେମିତି ହେଲମେଟ୍ ପାଇଁ ତାଗିଦି କରାଯାଉଥିଲା । ଫାଇନ୍ କଷା ଯାଉଥିଲା; ହେଲେ, ଏବେ ମାର୍ଚ୍ଚମାସ ଟାର୍ଗେଟ ଚାଲିଚି । ଖାଲି ମୁଣ୍ଡ ନୁହଁ, ଯକୃତ, ହୃଦଯନ୍ତ୍ର ସମସ୍ତଙ୍କର ଦାମ୍ ବଢ଼ିଯାଇଚି । ଆଗରୁ ମଦ, ଗଞ୍ଜେଇ ଭଳି ଯକୃତ ଓ ହୃଦଯନ୍ତ୍ର ନଷ୍ଟ କଲାଭଳି ମାଦକ ଦ୍ରବ୍ୟର ଧରପଗଡ଼ ହେଉଥିଲା; ହେଲେ ଏବେ ଟାର୍ଗେଟ ନେଇ ଧରପଗଡ଼ ଚାଲିଚି, ଫାଇନ କଷା ଚାଲିଚି ।

ଇନକମ୍ ଟାକ୍ସ, ସେଲ୍ସ ଟାକ୍ସ, ରୋଡ଼ ଟାକ୍ସ ଆଦି ସମସ୍ତ ଟାକ୍ସବାଲାଙ୍କର ଟାସ୍କ ବଢ଼ିଯାଇଚି ଏଇ ମାର୍ଚ୍ଚମାସରେ । କା' ପାଖରେ ଫୁର୍ସତ ନାଇଁ । କାହାକୁ କୁଆଡ଼େ ଟିକିଏ ଯିବା ପାଇଁ ଡାକିଲେ, ସେ ମନା କରି ଦେଉଚି । କହୁଚି- ଭାଇ ! ମାର୍ଚ୍ଚ ଏଣ୍ଡିଙ୍ଗ, ଯାଇ ହବନି । ବାପାଙ୍କ ଦେହ ଖରାପ ଖବର ଆସିଲେ ବି ଯାଇ ହଉନି, କାରଣ- ମାର୍ଚ୍ଚ ଏଣ୍ଡିଙ୍ଗ୍ । ଯାହା ହଉ, ଆମେ ଖୁସି ହେବା କଥା ଯେ, ଏମାନେ ପିତୃକାର୍ଯ୍ୟ ଛାଡ଼ି ରାଜକାର୍ଯ୍ୟରେ ଲାଗି ପଡ଼ିଚନ୍ତି । ରାଜକୋଷକୁ ବଢ଼ଉଚନ୍ତି ।

ଗୋଟାଏ ପାଖରେ ଅର୍ଥ ଆଦାୟରେ କିଏ ଲାଗିଥିଲାବେଳେ ଆର ପାଖରେ କିଏ ଅର୍ଥବ୍ୟୟର ବାଟ ଖୋଜୁଚି । ଆସିଥିବା ବଜେଟ୍‌କୁ ମାର୍ଚ୍ଚ ସୁଦ୍ଧା ଖର୍ଚ୍ଚ ନକଲେ ପଇସା ଫେରିଯିବ । ଏତେ ସହଳ ପଲସ୍ତରା, ଚୁନମରା, ରଙ୍ଗକରା କାମ

ହୋଇପାରିବ ନାହିଁ; କିନ୍ତୁ କାଗଜପତ୍ରରେ ତ ଏ କାମଗୁଡ଼ା ହୋଇଯାଇ ପାରିବ । ଏମାନେ ବିଲ୍ ତିଆରିରେ ଲାଗି ପଡ଼ିଚନ୍ତି । କାହାରି ହାତକୁ ଆଉ ଫୁର୍ସତ ନାହିଁ । କେବଳ ଡାହାଣ ହାତ ନୁହଁ ଆଜ୍ଞା ! ବାଆଁ ହାତର ବି କିଛି କମ୍ କାମ ନାହିଁ ଏଇ ମାର୍ଚ୍ଚ ମାସରେ । ଡାହାଣ ହାତ ବିଲ୍ ତିଆରିରେ ଲାଗିଥିଲାବେଳେ ବାଆଁ ହାତ ଦସ୍ତଖତ କରିବାରେ ବ୍ୟସ୍ତ । 'ବାଆଁ ହାତର କରାମତି' କଥାଟାର ଅର୍ଥ ଏଇ ମାର୍ଚ୍ଚରେ ହିଁ ବୁଝିହୁଏ ।

ଆଉ କିଛି ଟାର୍ଗେଟବାଲାଙ୍କ କଥା କହିବା ପୂର୍ବରୁ ମୁଁ ମୋ ଘର ଅବସ୍ଥା ଆପଣଙ୍କୁ ଟିକିଏ ସୂଚେଇଦିଏ । ମୋ' ଘରେ ବି ଏବେ ନିଅଣ୍ଟିଆ ବଜେଟ୍ ଚାଲିଚି । ଏ ମାସରେ ଇନକମ୍ ଟାକ୍ସ କଟିଗଲା ପରେ ମୋ ଘରଣୀଙ୍କ ମାସ ଚଳିବା ଚିନ୍ତା ବଢ଼ିଯାଇଚି । ଘରଣୀ କହିଲେ- ହଇଓ ! ଏ ମାସରେ ତମର ପ୍ରୋଗ୍ରାମ ଫ୍ରୋଗ୍ରାମ କିଛି ନାହିଁ ? କୋଉଠୁ ଯଦି ପ୍ରୋଗ୍ରାମର ଅଫରଟାଏ ଆସି ଯା'ନ୍ତା ଏ ମାସଟା ଖୁସିରେ ଚଳିଯା'ନ୍ତା । ଠିକ୍ ସେତିକି ବେଳକୁ ମୋବାଇଲ୍‌ରେ ଗୋଟେ କଲ୍ ଆସିଲା- ଜ୍ଞାନ ଭାଇ ! ମୁଁ ମାନିନୀର ଭଉଣୀ ଶାଳିନୀ କହୁଚି । ମୁଁ ଆପଣଙ୍କୁ ପାଞ୍ଚମିନିଟ୍ ପାଇଁ ଦେଖା କରିପାରିବି ? ଆପଣଙ୍କ ପାଇଁ ଗୋଟେ ଭଲ ଅଫର ଅଛି ।

ଏ କଥା ଶୁଣି ଘରଣୀ ମୋ ଖୁସିରେ କୁରୁଳି କହିଲେ- ଦେଖିଲ, ମୁଁ କହୁ କହୁ କେମିତି ଗୋଟେ ଅଫର ଆସିଗଲା । ମୋ ତୁଣ୍ଡ କେତେ ସୁତୁଣ୍ଡ । ଏତକ କହି ଘରଣୀ ଚାଲିଲେ ରୋଷେଇ ଘରକୁ । ନିଅଣ୍ଟିଆ ବଜେଟ୍ ଭିତରେ ବି ପକୁଡ଼ି, ଚା' ତିଆରି ହେଲା ଶାଳିନୀଙ୍କ ପାଇଁ । ପକୁଡ଼ି ଚା' ଖାଇସାରି ଶାଳିନୀ ତାଙ୍କ ଅଫର ଆମ ସାମ୍ନାରେ ଦେଲେ-ଆମ ହାଜାଜ୍ ଆଲିଆନ୍ସରେ ଇନସ୍ୟୁରାନ୍ସଟାଏ କରି ମାର୍ଚ୍ଚ ମାସ ଟାର୍ଗେଟ ପୂରଣ କରିବାରେ ସାହାଯ୍ୟ କରନ୍ତୁ ।

ଘରଣୀ ମୋ ମୁହଁକୁ, ମୁଁ ତାଙ୍କ ମୁହଁକୁ ଅନାଅନି ହେଲୁ । ଘରଣୀଙ୍କ ପାଖକୁ ଯାଇ ପଚାରିଲି- ହଇଓ ! କରିବା ? ଘରଣୀ ବିଗିଡ଼ିକି କହିଲେ- ଆମର ଅବସ୍ଥା ଯାହା ଏବେ ସେ ବୀମାଫିମା କଲେ ଆମେ ମରିବା । ମୁଁ କହିଲି- ମରିଗଲେ ତ ଭଲ । ଶାଳିନୀର ଟାର୍ଗେଟ ଭଳି ଯମର ବି ଯଦି ମାର୍ଚ୍ଚ ମାସର ଟାର୍ଗେଟ ଥାଏ, ପୂରଣ ହେଇଯିବ ।



# ଦଉଡ଼ ଧାପଡ଼

**ଚା**ଷ କାମ ଯାହାର
କି ଆନନ୍ଦ ତାହାର
ସେହି ସିନା ଦୁନିଆକୁ
ଯୋଗାଉଚି ଆହାର

ଚାଷ କାମରେ ଯେ କେତେ ଆନନ୍ଦ ଚାଷୀ ଆତ୍ମହତ୍ୟା କଲାପରେ ହିଁ ତାହା ବୁଝାପଡ଼ିଲା । ଲୋକ ମୁଖେ ଅନ୍ନ ଦେଇ ଖୁସି ହେଉଥିବା ଚାଷୀ ନିଜକୁ ଓ ନିଜ ପରିବାରକୁ ଅନ୍ନ ଯୋଗାଇ ପାରିଲା ନାହିଁ । ପୋକ ଚରି ଯାଇଥିବା ଫସଲରେ ଆବଶ୍ୟକ ପୋକମରା ଔଷଧ କିଣି ନପାରି ଯେତିକି କିଣି ପାରିଲା ତାକୁ ନିଜେ ପିଇ ଜୀବନ ହାରିଦେଲା । ଚାଷୀ ଆତ୍ମହତ୍ୟାର କାରଣ ଅନୁସନ୍ଧାନ ଚାଲିଥିବାବେଳେ ଥୋକେ ସ୍ୱଭାବ ସୁଲଭ ଭଙ୍ଗୀରେ ସରକାରଙ୍କ ଉପରେ ହିଁ ଦୋଷ ଲଦିଦେଲେ । ସରକାର କୁଆଡ଼େ ଚାଷୀଙ୍କ ଦୁଃଖକୁ ଅଣଦେଖା କରୁଚନ୍ତି ।

ସବୁ କଥାରେ ସରକାରଙ୍କ ଉପରେ ଦୋଷ ଲଦିଦେବା ଆମର ଗୋଟେ ଅଭ୍ୟାସ । ବାଣୀବିହାରରେ ଛାତ୍ର ଅଶାନ୍ତି ଦେଖାଦେଲା, ସାଏନ୍ -ଇ-ଡାଏ ହେଲା, ପାଠଶାଠ, ପରୀକ୍ଷା, ସେମିନାର ସବୁ ବନ୍ଦ । ପୁଲିସ ଛାତ୍ର ଧସ୍ତାଧସ୍ତି ହେଲେ । ବଲାଙ୍ଗିରରେ ଏବେ ଅନୁରୂପ ଘଟଣା ଘଟିଲା । ପୁଲିସ ଗାଡ଼ି ଇଂଜିନିୟରିଂ ଛାତ୍ର ଉପରେ ଚଢ଼ିଗଲା । ଏ କଥାକୁ କେନ୍ଦ୍ରକରି ରାଜ୍ୟସାରା ଛାତ୍ର ଆନ୍ଦୋଳନ ଚାଲିଲା । ଏ ମାମଲାରେ ବି ସରକାରଙ୍କ ଉପରେ ଦୋଷ ଲଦି ଦିଆଗଲା । ସରକାର କୁଆଡ଼େ ଏଇ ଗଣ୍ଡଗୋଳର ନିରବଦ୍ରଷ୍ଟା ସାଜିଚନ୍ତି ।

ମାଓବାଦୀମାନେ ଥାନା ପୋଡ଼ିଦେଲେ, ଟାୱାର ଉଡ଼ାଇଦେଲେ, ରାଜଧାନୀ ଏକ୍ସପ୍ରେସ୍‌କୁ ଦଶଘଣ୍ଟା କବ୍‌ଜାରେ ରଖିଲେ, ରାଜ୍ୟରେ ବିଷାକ୍ତ ମଦ ପିଇ ଲୋକେ ପ୍ରାଣ ହରାଇଲେ, ଖଣି ଦୁର୍ନୀତିରେ ଆମ ଖଣିଜ ସମ୍ପଦ ଲୁଟ୍ ହୋଇଗଲା, କଳାହାଣ୍ଡିରେ ଲୋକ ଅନାହାରରେ ମଲେ - ସବୁଥି ପାଇଁ ସେ ସରକାର ଉପରେ ଦୋଷ । ସରକାର କୁଆଡ଼େ କାହା ହାରି ଗୁହାରି କର୍ଣ୍ଣପାତ କରୁନାହାନ୍ତି ।

ସବୁ କଥାରେ ସରକାରଙ୍କ ଉପରେ ଦୋଷ ଲଦୁଥିବା ଜନତାଙ୍କ ବୋଧ ନିମନ୍ତେ ଆମେ ଛୋଟ କାହାଣୀଟିଏ ଅବତାରଣା କରୁଚୁ ।

- ଜଙ୍ଗଲରେ ଗଣତନ୍ତ୍ର ପ୍ରତିଷ୍ଠା ହେଲା । ବାଘ ହାତରୁ ଶାସନଭାର କାଢ଼ିନେଇ ମାଙ୍କଡ଼କୁ ଶାସକ କରିଦିଆଗଲା । ମାଙ୍କଡ଼ରାଜାଙ୍କ ଶାସନକାଳରେ ଦିନେ ବାଘଟିଏ ହରିଣ ଛୁଆକୁ ମାଡ଼ି ବସିଲା । ମାଆ ହରିଣଟି ବିକଳ ହୋଇ ମାଙ୍କଡ଼ରାଜାଙ୍କ ପାଖରେ ଗୁହାରି କଲା । ମାଙ୍କଡ଼ରାଜା ତତ୍‌କ୍ଷଣାତ୍ ଘଟଣାସ୍ଥଳରେ ପହଞ୍ଚିଲେ । ଗୋଟାଏ ଗଛ ଉପରକୁ ଚଢ଼ିଗଲେ । ଏ ଡାଳରୁ ସେ ଡାଳକୁ ଡେଇଁଲେ । ବାଘ ଆଡ଼କୁ ଚାହିଁ କାନ କୁଣ୍ଡାଇ ଖତେଇ ଖିଙ୍କାରି ହେଲେ । ବାଘ କିନ୍ତୁ ନିର୍ବିକାର ଭାବେ ହରିଣଛୁଆକୁ ଆକ୍ରମଣ କରିଚାଲିଥିଲା ।

ମାଆ ହରିଣଟି ଧୈର୍ଯ୍ୟହରା ହେଇ ମାଙ୍କଡ଼ରାଜାକୁ କହିଲା, 'ମହାରାଜ ! ଆପଣ ମୋ ସମସ୍ୟାର ସମାଧାନ କରିବେ ନା ଖାଲି ଗଛ ଉପରେ ରହି ଖତେଇ ଖିଙ୍କାରି ହେଉଥିବେ ? ମାଙ୍କଡ଼ରାଜା ଗୁରୁଗମ୍ଭୀର ଭାବେ ମାଆ ହରିଣକୁ କହିଲେ, 'ମ୍ୟାଡମ୍ ! ମୁଁ କିଛି କରିନାହିଁ ବୋଲି ଆପଣ କିପରି ଅଭିଯୋଗ କରୁଛନ୍ତି ? ଆପଣଙ୍କ ଅଭିଯୋଗ ପାଇବାମାତ୍ରେ ମୁଁ ଘଟଣାସ୍ଥଳକୁ ଆସିଚି । ଆପଣଙ୍କ ସମସ୍ୟାର ସମାଧାନ ହେଉ କି ନହେଉ ମୋ ଦଉଡ଼ ଧାପଡ଼ରେ କିଛି ଅବହେଳା ହେଇଚି କି ?'

ଏ କାହାଣୀଟି ପଢ଼ିସାରିବାପରେ ଆପଣମାନେ ଟିକିଏ ଚିନ୍ତାକରନ୍ତୁ, ଚାଷୀ ଆତ୍ମହତ୍ୟା ପରେ ସରକାର କ'ଣ ଉଚ୍ଚସ୍ତରୀୟ ତଦନ୍ତ କମିଟି ଗଢ଼ିନାହାନ୍ତି ?

ଛାତ୍ର ଅଶାନ୍ତି ଓ ମାଓବାଦୀ ହମଲାର ସମାଧାନ ପାଇଁ ସରକାର କ'ଣ ଆପୋଷ ଆଲୋଚନା କରିବାର ଉଦ୍ୟମ କରି ନାହାନ୍ତି ? କଳାହାଣ୍ଡିର ଅନାହାର ମୃତ୍ୟୁ ପାଇଁ କେନ୍ଦ୍ର ମନ୍ତ୍ରୀଙ୍କଠାରୁ ରାଜ୍ୟମନ୍ତ୍ରୀଙ୍କ ଯାଏ କେହି କ'ଣ କଳାହାଣ୍ଡିକୁ ଦଉଡ଼ ଧାପଡ଼ କରିନାହାନ୍ତି ?

ଯଦି ଏ ସବୁର ଉତ୍ତର 'ହଁ, ସରକାର ସବୁ କରିଚନ୍ତି'; ତେବେ ଆମେ ମାନିବାକୁ ବାଧ୍ୟ ହେବା ଯେ ଦେଶର ସମସ୍ୟା ସମାଧାନ ହେଉ କି ନହେଉ 'ଦଉଡ଼ ଧାପଡ଼'ରେ ସରକାର ଅବହେଳା କରିନାହାନ୍ତି ।



# ମଝି ବରଡ଼ା

ତଳ ବରଡ଼ା ଖସୁଚି
ଉପରବରଡ଼ା ହସୁଚି
ମଝି ବରଡ଼ା ଥାଇ କହୁଚି-
ରହ ରହରେ ଉପର ବରଡ଼ା
ତୋ' ଦିନକାଳ ଆସୁଚି ।

ମଧ ବୟସରେ ପହଞ୍ଚିଲା ପରେ ଏଇ ଚେତନା ଟିକକ ମୁଣ୍ଡରେ ପଶିବା କଥା । ଉପର ବରଡ଼ା ବା କଞ୍ଚା ବୟସର ପିଲାଙ୍କ ପ୍ରତି ଶ୍ରଦ୍ଧା ସହ ମଝି ବରଡ଼ା ବା ବୟସ୍କଙ୍କ ପ୍ରତି ଅନୁକମ୍ପା ଟିକେ ରହିବା ନିହାତି ଆବଶ୍ୟକ ।

ଏବେ ଅଫିସ ଭିତରେ ମଧ୍ୟବୟସ୍କଙ୍କ ଚର୍ଚ୍ଚାରୁ କେବଳ ଗୋଟିଏ କଥା ଶୁଣାଯାଏ- କିଏ କାହା ପିଲା ପାଇଁ କ'ଣ କରିଚି । କିଏ କାହା ପୁଅକୁ କୋଉଠି ପଢ଼ଉଚି ଆଉ କେତେ ଖର୍ଚ୍ଚ କରୁଚି । କାଁ ଭାଁ ଶୁଣାଯାଏ ବା ପ୍ରାୟ ଶୁଣାଯାଏ ନାହିଁ-କିଏ କା' ବାପାମା'ଙ୍କର କେମିତି ସେବା କରୁଚି ।

ଆମେ ପ୍ରାୟ ଏବେ ଆମ ପିଲାଙ୍କ ପାଇଁ ହିଁ ଚିନ୍ତିତ । ଶ୍ରବଣକୁମାର ଆଉ ରାମଚନ୍ଦ୍ରଙ୍କ କଥା ତ କେବଳ ବହିରେ ଗପ ହେଇ ରହିଗଲାଣି । କୋଉ କାଳେ ପଚରା ଯାଉଥିଲା - ସେ ତା' ବାପାମା'ଙ୍କର ସେବା କରୁଚି ତ? ମଝିରେ ପଚରାହେଲା - ସେ ତା' ବାପାମା'ଙ୍କୁ ପଚାରୁଚି ତ ? ଏବେ ଆଉ ବାପାମା' ପିଲାଙ୍କଠୁ ସେବାଯତ୍ନ ଆଶା କରୁନାହାନ୍ତି । ପିଲା ଯେ ତାଙ୍କୁ ଭବିଷ୍ୟତରେ ପଚାରିବ ସେଇ ଆଶା ବି ରଖୁନାହାନ୍ତି । ବୋଧେ ସମୟ ଆସୁଚି ଯେତେବେଳେ ବାପାମା' ଖୁସି ହେଇ କହିବେ- ଯାହା ହଉ, ଆମ ପୁଅ ଆମକୁ ବାଡ଼ଉ ନାହିଁ ।

ଜଣେ ବନ୍ଧୁ ଏବେ ମତେ କହିଲେ - 'ଦେଖନ୍ତୁ ତ ଜ୍ଞାନବାବୁ ! ଆଜିକାଲିକା ପିଲା କେମିତି ବାପାମା'ଙ୍କର ମୁହଁରେ ଜବାବ୍ ଦେଉଚନ୍ତି । ଟିକେ ଚିନ୍ତା କଲେ- ଆମ ବାପାମା'ଙ୍କ କଥା ଉପରେ ଆମେ କେବେ କଥା କହିଚେ ? ମୁଁ ହସିଦେଇ କହିଲି - 'ଆମେ ଆମ ବାପାମା'ଙ୍କୁ ଖୁବ୍ ସମ୍ମାନ ଦେଉଥିଲୁ ଏହା ସତ; ହେଲେ ଏ କଥା ଆମ ପିଲା ବିଶ୍ୱାସ କରିବେ କେମିତି ? ଆମେ ତ ଆମ ବାପାମା'ଙ୍କୁ କେବେ ପାଖରେ ଦୀର୍ଘଦିନ ରଖିଲେ ନାହିଁ । କ'ଣ ନା - ବାପା ମା' ରହିଲେ ପିଲାଙ୍କ ପଢ଼ା ଡିଷ୍ଟର୍ବ ହେଉଚି । ପିଲା ଶିଖିବେ କେମିତି ?'

ବନ୍ଧୁ ଦୀର୍ଘ ନିଃଶ୍ୱାସଟାଏ ମାରି କହିଲେ - 'ସତକଥା ।' ମୁଁ କହିଲି- 'ତା'ଠୁ ବଳିକି ଆହୁରି ସତକଥା ଅଛି । ୟା ତା' କଥା କହିବା ଅପେକ୍ଷା ମୁଁ ମୋ ନିଜକଥା କହିବାଟା ଉଚିତ ମଣୁଚି । ମୋ' ବାପାଙ୍କର ଯେତେବେଳେ ସାଙ୍ଘାତିକ ଦେହ ଖରାପ ହେଲା, ଆମେ ଚିନ୍ତାରେ ପଡ଼ିଗଲୁ - ପିଲାର ପରୀକ୍ଷାବେଳରେ ୟାଙ୍କର ଦେହ ଖରାପ ହେବାର ଥିଲା ? ବାପା ସେପାରିକୁ ଚାଲିଗଲେ । ତାଙ୍କ ଅସୁସ୍ଥତା ସମୟରେ ଦିନଟିଏ ସମୟ କାଢ଼ିପାରିନଥିଲୁ । ଶୁଦ୍ଧିକ୍ରିୟା ପାଇଁ ୧୨ ଦିନ ଛୁଟି ନେଇ ପାରିଲୁ ।

ଏବେ ମା' ଗାଁରେ ରହୁଚନ୍ତି । ତାଙ୍କୁ ଥରଟିଏ ଦେଖିଦେଇ ଆସିବା ପାଇଁ ନା ମତେ ସମୟ ଅଛି ନା ମୋ ଭାଇମାନଙ୍କୁ । ସମସ୍ତଙ୍କୁ ସମୟର ଘୋର ଅଭାବ; କିନ୍ତୁ ଭାଇ ! ଆମ ପିଲାମାନେ ଆମ ଗତିବିଧିକୁ ଲକ୍ଷ୍ୟ କରୁଚନ୍ତି । ଆମେ ନୂଆବର୍ଷରେ ପିକ୍‌ନିକ୍ କରିବାକୁ ଚିଲିକା ଯାଇପାରିଲୁ, କ୍ରିକେଟ୍ ଦେଖିବାପାଇଁ ଛୁଟି ନେଇ ଘରେ ରହିପାରିଲୁ; କିନ୍ତୁ ମା'ଙ୍କ ପାଇଁ ଆମ ପାଖରେ ସମୟ ନାହିଁ ! କାଲି ବୁଢ଼ାବୁଢ଼ୀ ହେଇ ଆମେ ଯେତେବେଳେ ଏକୁଟିଆ ଥିବା, ଆମ ପୁଅ ବି ସେମିତିଆ ସମୟର ବାହାନା କରି ରହିଗଲେ କେମିତି ଲାଗିବ ?

ଭାଇ ! ଆଉ କିଛି ମଝି ବରଡ଼ାଙ୍କ କଥା କହିଲେ ତ ତମେ ମୁଣ୍ଡରେ ହାତ ଦେବ । 'ତଳ ବରଡ଼ା ଖସିଲା ଭଳି ମଝି ବରଡ଼ାଟା ଖୁବ୍ ଶୀଘ୍ର ଖସିବ' - ଏହା ଜାଣି ବି ଉପର ବରଡ଼ାର ସୁଖସମୃଦ୍ଧି ପାଇଁ ବେଳେବେଳେ ମଝି ବରଡ଼ାମାନେ

ତଳବରଡ଼ାଟା ଶୀଘ୍ର ଖସୁ ବୋଲି ଚାହାନ୍ତି । ଏଭଳି ଏକ ଦୃଶ୍ୟକୁ ନେଇ ମୁଁ କବିତାଟେ ଲେଖିଥିଲି -

ଧରି ଜେଜେବାପା ହାତକୁ
ମୁନା କରେ ଜିଦି
ଚାଲ ଯିବା ଜେଜେ ଛାତକୁ ।

ବୁଢ଼ା ପଚାରେ-
କାହିଁକି ଯିବାରେ ତୁଛାରେ
କି କାମ ବା ମୋର ଉପରେ ?

ମୁନା କହେ- କାଲି
ମିଛଟାରେ ଶୋଇ
ବାପା ବୋଉଙ୍କର କଥା ଶୁଣିଥିଲି ।

ବାପା କହୁଥିଲେ ବୋଉକୁ
ବୁଢ଼ା ଚାଲିଗଲେ ଉପରକୁ;
ଗାଁ ଘର ବିକି
ଚାଲିଯିବା ଆମେ ସହରକୁ ।



# ଆତ୍ମ ସମ୍ମାନ

ମତେ କେହି ମାନନୀୟ ବୋଲି କହିଲେ ମୁଁ ଯେତିକି ଖୁସି ନହୁଏ, ପାନ ନିଅ ବୋଲି କହିଲେ ତା'ଠୁ ବେଶୀ ଖୁସି ହୋଇଥାଏ । ଏକଥା ଶୁଣି ମତେ ବହୁଲୋକ ଭୁଲ ବୁଝନ୍ତି । 'ମାନ'ଟା ସବୁବେଳେ ପାନଠୁ ବଡ଼ ବୋଲି କହନ୍ତି । ମାନ ମାଗିଲେ ମିଳେ ନାହିଁ, ପାନ ମାଗିଲେ ମିଳିଯାଏ ।

ଆଜ୍ଞା ! ଏଠାରେ ମୁଁ ଯୋଉ ମାନ କଥା କହୁଚି ତାହା ପାନମଗାଠୁ ବି ଅପମାନଜନକ୍। ଅନ୍ନଛତ୍ର ଖୋଲି ଅନ୍ନ ବାଣ୍ଟିଲା ଭଳି ମାନଛତ୍ର ଖୋଲି ଏବେ ମାନପତ୍ର ସବୁ ବଣ୍ଟାଚାଲିଚି । ଏଭଳି ମାନପତ୍ର ଖଣ୍ଡେ ପାଇବା ପାଇଁ ନିଜ ହାତରୁ ପଇସା ଖର୍ଚ୍ଚ କରୁଥିବା ଲୋକଙ୍କର ବି ଏ ରାଜ୍ୟରେ ଅଭାବ ନାହିଁ । ମୋ ମତରେ ତ ଏ ମାନପତ୍ରଠୁ ପାନପତ୍ରଟିଏ ବରଂ ଭଲ ।

ମାନ-ସମ୍ମାନ, ପ୍ରଶଂସା ଯେ କବି, ସାହିତ୍ୟିକ ଏବଂ ସମାଜସେବୀଙ୍କୁ ପ୍ରେରଣା ଯୋଗାଏ ଏକଥାକୁ କେହି ଅସ୍ୱୀକାର କରିପାରିବେ ନାହିଁ । ଯୋଗ୍ୟ ଲୋକର ପ୍ରଶଂସା ହେବା ଉଚିତ । ଗଙ୍ଗାଧରଙ୍କ ଭାଷାରେ-

ପ୍ରଶଂସା ନହେଲେ ପୃଥ୍ୱୀ ପ୍ରକୃତ ଗୁଣର
ତତୋଦ୍ଧିକ ଅମଙ୍ଗଳ ହୁଏ ଜଗତର ।

ସେଇ ଗଙ୍ଗାଧର ପୁଣି ସତର୍କ କରାଇଦେଇଛନ୍ତି- 'ଅଯଥା ପ୍ରଶଂସା ଅତି ଅମଙ୍ଗଳକର ।' କିନ୍ତୁ ଆମର ଏଠି ଅନୁଷ୍ଠାନ ଖୋଲି ବସିଥିବା ମହାନୁଭବମାନେ ଏହି ଯଥା ଅଯଥା କଥା ବିଚାରନ୍ତି ନାହିଁ । ବହୁ ସଂଖ୍ୟାରେ ମାନପତ୍ର ବାଣ୍ଟି ସଭାସମିତିରେ ଭିଡ଼ ଜମାଇବା ହିଁ ଏମାନଙ୍କର ଉଦ୍ଦେଶ୍ୟ । ଏଣୁ ଆଜିକାଲି ମୁଁ ଏଭଳି ଭିଡ଼ଠାରୁ ଦୂରେଇ ରହିବାକୁ ଚେଷ୍ଟା କରିଆସୁଚି ।

ବେଳେବେଳେ କିଛି ସ୍ୱତନ୍ତ୍ର ସମ୍ମାନ ପାଇବାର ମୋହ ମତେ ବି ଆକୃଷ୍ଟ କରେ । ନିକଟରେ ଗୋଟାଏ ଅନୁଷ୍ଠାନର ଦୁଇଜଣ ଭଦ୍ରଲୋକ ଏହିଭଳି ଏକ ସମ୍ମାନର ମୋହ ନେଇ ମୋ ଘରେ ଆସି ପହଞ୍ଚିଲେ । ଜଣେ ମହାପୁରୁଷଙ୍କ ନାମରେ ନାମିତ ଏହି ସମ୍ମାନଟିକୁ ହାତଛଡ଼ା କରିବାର ଇଚ୍ଛା ମୋର ବି ନଥିଲା । ଭଦ୍ରଲୋକଙ୍କୁ ସସମ୍ମାନ ମୋ ଦାଣ୍ଡଘରେ ବସାଇ ଚା'ଜଳଖିଆ ଦେଇ ପଚାରିଲି, 'ଆଜ୍ଞା ! ଆପଣ ସେଇଠି ଆଉ କାହାକୁ ସବୁ ସମ୍ମାନିତ କରୁଛନ୍ତି' ? ଜଣେ ଭଦ୍ରଲୋକ ତାଲିକାଟିଏ ବାହାରକରି ମୋ ହାତକୁ ବଢ଼ାଇଦେଲେ । ଶ୍ରୀ ଅନାମ ସାହୁ- ପଥିକ ବନ୍ଧୁ ସମ୍ମାନ, ଶ୍ରୀ ଦାମ ଦାସ- ଗମ୍ବୁଜଶ୍ରୀ ସମ୍ମାନ, ଶ୍ରୀ ହାଡୁ ମହାପାତ୍ର- ସଜଫୁଲ ସମ୍ମାନ, ଶ୍ରୀ... । ମୁଁ ବହୁ ଚେଷ୍ଟାକଲି ଏ ସମ୍ବର୍ଦ୍ଧିତ ପ୍ରତିଭାମାନଙ୍କୁ ଚିହ୍ନିବା ପାଇଁ । ତା' ଭିତରୁ ଚିହ୍ନା ନାଁଟିଏ ନପାଇ ଭଦ୍ରଲୋକଙ୍କୁ ପଚାରିଲି, 'ଭାଇ ! ଏମାନେ ସାହିତ୍ୟ କରନ୍ତି ନା ସମାଜସେବା ନା.... ?'

ଅନ୍ୟ ଭଦ୍ରଲୋକ ଜଣକ ଏଥର ଆରମ୍ଭ କଲେ- 'ଆଜ୍ଞା ! ଅନାମ ସାହୁ ହେଉଚନ୍ତି ଆମ ଗାଆଁ ରାସ୍ତାକଡ଼ରେ ଜଣେ ଢ଼ାବା ମାଲିକ । ଆପଣମାନେ ସବୁ ପଥିକଭାବେ ଗଲାବେଳେ ତାଙ୍କରି ଢ଼ାବାରେ ଖାଇକି ଯିବେ । ଏଣୁ ଆମେ ତାଙ୍କୁ 'ପଥିକବନ୍ଧୁ' ସମ୍ମାନରେ ସମ୍ମାନୀତ କରୁଚୁ । ଶ୍ରୀ ଦାମ ଦାସଙ୍କ ଗୋଟାଏ ଟେଣ୍ଟହାଉସ୍ ଅଛି । ଆମର ଯୋଉ ତିନିଦିନ ବ୍ୟାପୀ ମିଟିଂ ଚାଲିବ ତା'ର ଟେଣ୍ଟ ବା ତମ୍ବୁ ବ୍ୟବସ୍ଥା ସେ କରିବେ । ଆମେ ତାଙ୍କୁ 'ତମ୍ବୁଶ୍ରୀ' ସମ୍ମାନ ଦେବୁ । ମୁଁ କହିଲି, 'ଆଜ୍ଞା ! ମୁଁ ପୂରା ବୁଝିଗଲି । ହାଡୁ ମହାପାତ୍ର ଅତିଥିଙ୍କ ପାଇଁ ଫୁଲହାର, ଫୁଲତୋଡ଼ା ଯୋଗାଇବେ, ଆପଣ ତାଙ୍କୁ 'ସଜଫୁଲ' ସମ୍ମାନ ଦେବେ । ରଘୁ ବେହେରା ସମସ୍ତଙ୍କୁ ଗରମ ଗରମ ଚା' ଦେବେ, ଆପଣ ତାଙ୍କୁ 'ଉଷ୍ମରାଜ' ସମ୍ମାନ ଦେବେ । ମତେ କ୍ଷମାକରିବେ ଆଜ୍ଞା, ମୁଁ ଆପଣଙ୍କୁ କିଛି ବି ଯୋଗାଇ ପାରିବି ନାହିଁ । ମୁଁ ମୋର 'ଆତ୍ମ ସମ୍ମାନ' ସହ ମୋ ଘରେ ହିଁ ରହିବି ।



# ହରଣ ବନାମ୍ ଧରିପଳାପଳି

'ଘୋର କଳିକାଳ । ଆଉ ବେଶି ଦିନ ନୁହଁ । ମାଳିକା ଠିକ୍ କହିଚି- ଏଗାର ଡେଇଁବ ନାହିଁ । ଧ୍ୱଂସ ହେଇଯିବ । ଏଇ ତ ଆରମ୍ଭ ହେଲା ।'

'ନନା ! କ'ଣ ହେଲା ?'

'ଖବରକାଗଜ ପଢ଼ିନ କି ? ଏଇ ମଥୁରାପୁରର ବସୁଦେବ ପଣ୍ଡାଙ୍କ ପୁଅ ଗୋବିନ୍ଦ ପଣ୍ଡା (ଛଦ୍ମନାମ), ତଳସାହିର ସୁମନ୍ତ ସେଠୀଙ୍କ ଝିଅ ରକ୍ମିଣୀ ସେଠୀ (ଛଦ୍ମନାମ)କୁ ଧରି ପଳେଇଲା ।'

ମୁଁ ପଚାରିଲି- ''ନନା ! ଖବରକାଗଜରେ କ'ଣ 'ଧରିପଳେଇଲା' ବୋଲି ଲେଖା ହେଇଚି ?''

ନନା ବିଗିଡ଼ିଲେ, କହିଲେ- ''ଯାହା ଲେଖାହେଉ ହେ । ଟୋକାଟୋକୀଙ୍କ ନାଁ ବଦଳେଇକି ଗୋବିନ୍ଦ- ରକ୍ମିଣୀ କରିଦେଲେ, ଏଇ 'ଧରିପଳାପଳି' ଟା କ'ଣ 'ହରଣ' ହେଇଯିବ ନା କ'ଣ ?''

ମୁଁ କହିଲି- ''ନା, ଜମାରୁ ହେଇପାରିବ ନାହିଁ । କିରାଣି ପାଇଁ ଯୋଉ ଶବ୍ଦ ହାକିମ ପାଇଁ ସେ ଶବ୍ଦ ବ୍ୟବହାର ହେଉ ନହିଁ । କିରାଣି ନେଲେ 'ଉପୁରି', ହାକିମ ନେଲେ 'ଉପହାର' ହେଉଚି । ବହୁତ ଫରକ । ମଣିଷ ଖାଇଲେ 'ଖାଦ୍ୟ', ଠାକୁର ଖାଇଲେ 'ପ୍ରସାଦ' । ମଣିଷ ଶୋଇଲେ 'ନିଦ', ଠାକୁର ଶୋଇଲେ 'ପହଡ଼' । ମଣିଷ କାହାକୁ ଉଠାଇନେଲେ 'ଧରି ପଳାପଳି', ଠାକୁର ଉଠେଇନେଲେ 'ହରଣ' ।''

ବାଲୁଙ୍ଗା ପିଲାଟାଏ ଥାଇ କହିଲା- ''ଠାକୁର ପ୍ରେମ କଲେ 'ଲୀଳା', ଆମେ ପ୍ରେମ କଲେ 'କିଳା' ।

ନନା ବିଗିଡ଼ି ଉଚ୍ଛନ୍ନ ହେଲେ । ମୁଁ ବି ଟୋକାଟାକୁ ବିଗିଡ଼ିଲି । ନନା ଟିକିଏ ପ୍ରକୃତିସ୍ଥ ହେଲା ପରେ ପ୍ରସଙ୍ଗ ପୁଣି ଆରମ୍ଭ ହେଲା ।

ମୁଁ କହିଲି- 'ନନା, ମୁଁ ମନ୍ଦିର ବାହାରେ ଥାଇ ଆପଣଙ୍କ ପୂଜାପାଠ ଶୁଣୁଥିଲି-

ହରଣଂ ମଧୁରଂ
ରମଣଂ ମଧୁରଂ
ମଧୁରାଧିପତେରଖିଳଂ ମଧୁରମ୍ ।

ପ୍ରଭୁ ଗୋବିନ୍ଦ ରକ୍ମିଣୀଙ୍କୁ ନେଇଯିବା ଆଉ ଆମ ଗାଁ ଗୋବିନ୍ଦ ସେ ଝିଅକୁ ନେଇଯିବା ଭିତରେ ଶବ୍ଦର ଫରକ ଥାଇପାରେ, ହେଲେ କାମ ତ ଏକା । ସେଇ ହରଣ ଆପଣଙ୍କୁ ଏତେ ମଧୁର ଲାଗିଲା, ଆଉ ଏଇଟା ଏତେ ପିତା ଲାଗିଲା କାହିଁକି ?'

ନାନା ଛିଗୁଲେଇ କହିଲେ- ''କାହିଁ ରାମଚନ୍ଦ୍ର କାହିଁ ରାମିଆ ଭଣ୍ଡାରି ! କାହିଁ ପାଟରାଣୀ ରକ୍ମିଣୀ, କାହିଁ ରକ୍ମିଣୀ ସେଠୀ ! ରକ୍ମିଣୀଙ୍କ ହରଣ ସାଙ୍ଗେ ଏ ଦୋଚାରୁଣୀଙ୍କ 'ପଳାପଳି'କୁ ତୁମେ ତୁଳନା କରୁଚ ? ହଇଓ ! ୟାଙ୍କ ଭଳି ସେମାନେ କ'ଣ କୁଳଧର୍ମ, ଜାତିଧର୍ମକୁ ଭୁଲିଯାଇଥିଲେ ?''

ମୁଁ ହସିଦେଇ କହିଲି- 'ଜାତିଧର୍ମ ?? ଆଚ୍ଛା, କାଲି ତ ଆପଣ ଏଇ ମନ୍ଦିର ବେଢ଼ାରେ ବସି ଭୀମ ହିଡିମ୍ବା ପ୍ରସଙ୍ଗ କହୁଥିଲେ । ପ୍ରଭୁ ଶ୍ରୀକୃଷ୍ଣଙ୍କର ବି ସେଇ ବିବାହରେ ସମ୍ମତି ଥିଲା । ହଇଓ ନନା ! ଆମ ରକ୍ମିଣୀ ସେଠୀ ତ ମଣିଷ ଜାତିର । ହେଲେ ହିଡିମ୍ବା ତ ମଣିଷ କୁଳରେ ଜନ୍ମ ହେଇ ନଥିଲା, ଅସୁର କୁଳରେ ତାର ଜନ୍ମ ।'

ନନାଙ୍କ ପାଟି ଖନି ବାଜିଗଲା ।

ଏଇ ମଉକାରେ ମୁଁ ମୋର ପ୍ରବଚନ ଆରମ୍ଭ କରିଦେଲି - ''ଭକ୍ତିରେ, ଶ୍ରଦ୍ଧାରେ, ଭାବରେ ଭଲ ପାଇବାରେ ଜାତି ନଥାଏ । ଆପଣ ତ ଲକ୍ଷ୍ମୀପୁରାଣ ପଢ଼ିଚନ୍ତି-

'ଦାଣ୍ଡେ ଦାଣ୍ଡେ ଯାଉଥିଲେ ଲକ୍ଷ୍ମୀ ଠାକୁରାଣୀ,

ସହି ନପାରିଲେ ଚଣ୍ଡାଲୁଣୀର ଦୟିନୀ ।

ପଦ୍ମଫୁଲ ଦେଖି ତାଙ୍କ ବଳିଲା ଶରଧା,

ଦୁଇପାଦ ଦେଇ ମାତା ପଦ୍ମେ ହେଲେ ଉଭା ।'

ଏଇଭଳି ଭାବେ ଶ୍ରଦ୍ଧାରେ ଲକ୍ଷ୍ମୀ ସାଆନ୍ତାଣୀ ଜାତିଭେଦ ଭୁଲି ଚଣ୍ଡାଲୁଣୀ ଘରକୁ ଯାଇଥିଲେ । ଆମ କାଳିଆ ଠାକୁର ଜାତିଧର୍ମ ଭୁଲିଗଲ କହି ଲକ୍ଷ୍ମୀଙ୍କୁ ପର କରିଦେଲେ । ତା'ପରେ କାଳିଆ ବଳିଆ କେତେ ହଟହଟା ହେଲେ । ଏଇ ଭୁଲ ପାଇଁ ପସ୍ତେଇ ହେଲେ ।''

ଆଜ୍ଞା ! ଆମେ କ'ଣ ପସ୍ତେଇ ହେବା ନାହିଁ ? ସ୍ୱାଧୀନତାର ଷାଠିଏ ବର୍ଷ ପରେ ବି ଆମେ ପସ୍ତେଇ ହେଉନାହୁଁ । ଆମେ ପାଠ ପଢ଼ି ଶିକ୍ଷିତ ହେଇଚୁ ସତ, ଆମେ ପୁରାଣମର୍ମ ବୁଝୁଚୁ ସତ, ସୁଦଶା ବ୍ରତ ପାଳୁଚୁ ସତ ହେଲେ ଜାତିକୁ ନେଇ ଦୁର୍ଦ୍ଦଶା ସେମିତି ରହିଚି ।



# ବ୍ୟଙ୍ଗବାଣ

'ବନ୍ଧୁଗଣ ! ଆପଣମାନେ ଏ ଅଞ୍ଚଳ ପାଇଁ ଆଜି ଯାହା ଯାହା ପ୍ରସ୍ତାବ ଦେଲେ, ସମସ୍ତ ପ୍ରସ୍ତାବରେ ମୁଁ ରାଜି । ଯଥାଶୀଘ୍ର ଏସବୁ ନିଶ୍ଚିତ ଭାବେ କାର୍ଯ୍ୟକାରୀ ହେବ । ଆପଣମାନଙ୍କୁ ଏ ପ୍ରତିଶ୍ରୁତି ମୁଁ ଆଜି ଦେଉଚି ।'

ଏତକ ଭାଷଣ ଝାଡ଼ିଦେଇ ମଞ୍ଚରୁ ଆସି ନେତା ବସିଲାବେଳକୁ ଜନତା ଅତି ମାତ୍ରାରେ ଉତ୍ସାହିତ ହେଇଯାଇଥାନ୍ତି । ତାଳିମାଡ଼ରେ ଗଗନପବନ ପ୍ରକମ୍ପିତ ହେଉଥାଏ । ତା'ପରେ ପଡ଼ିଲା ଆମର ପାଳି । ଆମେ ମଞ୍ଚକୁ ଯାଇ ଆମ ସ୍ୱଭାବସୁଲଭ ଭଙ୍ଗୀରେ ଭାଷଣ ଆରମ୍ଭ କଲୁ- ଆଜ୍ଞା ! ଆପଣଙ୍କ ଉତ୍ସାହ ଦେଖି ଭାରି ଖୁସି ଲାଗୁଚି; ହେଲେ ଆମ ଦେଶରେ କଥାଟାଏ ଅଛି, ନାରୀ କଥାରେ କେବେ ନିରୁତ୍ସାହିତ ହବାକଥା ନୁହଁ କି ନେତା କଥାରେ କେବେ ଉତ୍ସାହିତ ହେବା କଥା ନୁହଁ । ନାରୀକୁ ଯାଇ ଥରେ ପ୍ରସ୍ତାବ ଦିଅନ୍ତୁ, ସେ କେବେ 'ହଁ' କହିବ ନାଇଁ । ନାରୀକୁ ପ୍ରେମ ନିବେଦନ କଲେ ସେ 'ନା'ରୁ ହିଁ ଆରମ୍ଭ କରିବ । ତା'ର 'ନା'ର ଅର୍ଥ ହେଉଚି 'ଦେଖିବା' ବା 'ଆଗକୁ ସମ୍ଭାବନା ଅଛି' । ଯଦି 'ଦେଖିବା' ବୋଲି କହିଲା ତାକୁ 'ହଁ' ବୋଲି ଧରିନେବେ, ଯଦି ସେ 'ହଁ' କହିଦେଲା ସେ ନାରୀ ନୁହଁ ବୋଲି ଜାଣିବେ । ସେଇପରି ନେତା କେବେ 'ନା' କହନ୍ତି ନାହିଁ । ତାଙ୍କୁ ଯାହା ପ୍ରସ୍ତାବ ଦେଲେ ସେ 'ହଁ' ବୋଲି କହିଥାନ୍ତି । ତାଙ୍କ 'ହଁ'ର ଅର୍ଥ 'ଚେଷ୍ଟା କରିବା' ବା 'ଆଗକୁ ଦେଖିବା' । ଯଦି ନେତାଜଣକ 'ଦେଖିବା' ବୋଲି କହନ୍ତି, ଆପଣ ତାକୁ 'ନା' ବୋଲି ଧରିନେବେ । ଯଦି ସେ ସିଧାସଳଖ 'ନା' ବୋଲି କହିଦିଅନ୍ତି, ସେ ନେତା ନୁହନ୍ତି ବୋଲି ଜାଣିବେ ।

ଆମର ଭାଷଣ ପରେ ଜନତା ପୁଣି ତାଳି ମାରିଲେ; କିନ୍ତୁ ନେତା ଓ ତାଙ୍କ ଚାଟୁକାରଙ୍କ ମୁହଁ ଶୁଖି ଯାଇଥିଲା । ଆମ ପଛରେ ନେତା ମନ୍ତବ୍ୟ ଦେବାର ବି ଆମେ ଶୁଣିଲୁ - 'ଏଇ ବ୍ୟଙ୍ଗକାରମାନେ ଆମର ସମ୍ମାନହାନୀ ହେବାପରି କଥାବାର୍ତ୍ତା କରୁଛନ୍ତି ।'

ଆଜ୍ଞା ! ଆମ୍ଭେ ଆମ୍ଭର କବିଧର୍ମ ପାଳନ କରିଚୁ ମାତ୍ର । କବି ଯାହା ଶୁଣେ, ଯାହା ଦେଖେ ତାକୁ ନେଇ କବିତା ଲେଖେ । କୃଷ୍ଣ ପିଲାବେଳେ ଚୋରି କରୁଥିଲେ, ଆମ କଲମରୁ ସେ ବି ନିସ୍ତାର ପାଇନାହାନ୍ତି । ଆମ୍ଭେ ଲେଖିଲୁ-

ବ୍ରଜେ ଚୋରି କଲୁ ଲହୁଣି ସର
ବାସ ହରିନେଲୁ ଗୋପ ନାରୀର
ସତରେ ଯଦି ତୁ ଏଡ଼ିକି ଚୋର
ଚୋରି କରି ନେ
ଜନମ ଜନମ ପାପକୁ ମୋର ।

ବୈଷ୍ଣବପାଣି ଜଗନ୍ନାଥଙ୍କୁ 'ମାଡୁଆ' ବୋଲି ଗାଳିଦେଇ ଲେଖିଥିଲେ -

ଛାଡ଼ ମାଡ଼ଖିଆ ବୁଦ୍ଧି ହେ
ବଡ଼ ଦେଉଳ ବଡ଼ ଗୋସେଇଁ

କବିର କଲମରୁ କୃଷ୍ଣ, ଜଗନ୍ନାଥ ବି ବର୍ତ୍ତିଯାଇ ନାହାନ୍ତି । ରାଜା, ମହାରାଜା, ବାଦଶାହମାନେ ବି ବ୍ୟଙ୍ଗର ଶିକାର ହେଇଚନ୍ତି । ରାଜାଙ୍କ ପାଖରେ ଯଦୁମଣି ଓ ବାଦଶାହଙ୍କ ପାଖରେ ବୀରବଲ ରହି ବ୍ୟଙ୍ଗ ମାଧ୍ୟମରେ ସେମାନଙ୍କର ଦୋଷ ତ୍ରୁଟିକୁ ଦର୍ଶାଉଥିଲେ । ଯୋଉ ଦେଶରେ ଈଶ୍ୱରଠୁ ରାଜା ମହାରାଜାମାନେ ବ୍ୟଙ୍ଗକୁ ସହ୍ୟ କରିଚନ୍ତି, ନେତା ମନ୍ତ୍ରୀମାନେ ବ୍ୟଙ୍ଗ ପ୍ରତି ଏତେ ବୀତସ୍ପୃହ କାହିଁକି ? ଏକଛତ୍ରବାଦୀ ଶାସନରେ ବି ରାଜାମାନେ ଚାଟୁକାର ସହିତ ବ୍ୟଙ୍ଗକାରମାନଙ୍କୁ ପାଖେପାଖେ ରଖୁଥିଲେ; କିନ୍ତୁ ଦୁଃଖର କଥା ଆଜି ଗଣତନ୍ତ୍ରରେ ଆମ ନେତା ମନ୍ତ୍ରୀମାନେ କେବଳ ଚାଟୁକାରମାନଙ୍କୁ ନେଇ ବୁଲୁଚନ୍ତି, ବ୍ୟଙ୍ଗକାରମାନଙ୍କୁ ଦେଖିଲେ ମୁହଁ ବୁଲାଉଚନ୍ତି ।

ଯେଉଁମାନେ ଦେଶ ଓ ଦଶର କାମରେ ଆସନ୍ତି ସେମାନଙ୍କ ଜୀବନ ଧନ୍ୟ ହୋଇଥାଏ । ସେ ଦୃଷ୍ଟିରୁ ନେତା ମନ୍ତ୍ରୀଙ୍କର ଜୀବନ ଧନ୍ୟ ବୋଲି ଆମେ ବିଚାର କରୁ । ଯୋଉ ନେତା ମନ୍ତ୍ରୀମାନେ ଦେଶ ଓ ଦଶର କାମରେ ଆସିପାରୁନାହାନ୍ତି ସେମାନେ ବ୍ୟଙ୍ଗକାରମାନଙ୍କ କାମରେ ଆସିପାରୁଚନ୍ତି, ସେ ଦୃଷ୍ଟିରୁ ଅନ୍ତତଃ ସେମାନେ ଖୁସି ହେବା କଥା ।



# ସମୟ କାଟିବା କଥା

**ଇ**ଣ୍ଟରସିଟିରେ ଭୁବନେଶ୍ୱରରୁ ସମ୍ବଲପୁର ଅଫିସ କାମରେ ଆସୁଚି । ସାଙ୍ଗରେ ଅଫିସର ଆଉ ଚାରିଜଣ ଅଛନ୍ତି । ଜଣେ ବନ୍ଧୁ ବ୍ୟାଗରୁ ଗାମୁଛାଟା କାଢ଼ି ଦୁଇ ସିଟ୍‌କୁ ଲଗେଇ ବିଛେଇଦେଲେ । ତାସ୍ ପୁଡ଼ାଟାଏ ବାହାର କରି କହିଲେ, 'ଜ୍ଞାନ ବାବୁ ଆସନ୍ତୁ ।' ମୁଁ କହିଲି, 'ନାଇଁ ଭାଇ, ମୋର ତାସ୍ ଖେଳିବାରେ ମୁଡ୍ ନାଇଁ । ବନ୍ଧୁ କହିଲେ, 'ଆରେ ମୁଡ୍ କ'ଣ ? ସମୟ କାଟିବା କଥା । (ଅନ୍ୟ ଦୁଇଜଣଙ୍କୁ) ହଉ ଭାଇ, ଆପଣମାନେ ଆସନ୍ତୁ ।'

ଚାରିବନ୍ଧୁ ତାସ୍ ଖେଳି ସମୟ କାଟିବାରେ ଲାଗିପଡ଼ିଲେ । ମୁଁ ଜାଣିଚି ମତେ ସମ୍ବଲପୁର ଗଲା ପରେ ଆଉ ସମୟ ମିଳିବ ନାଇଁ ଏ ସପ୍ତାହର 'ଅଜ୍ଞାନ ବିଚାର' ଲେଖିବା ପାଇଁ । ବର୍ତ୍ତମାନ ମୁଁ ପୂରାପୂରି ମୁକ୍ତ । କିଛି ଚିନ୍ତା କରିପାରିବି । ସାମ୍ନାରେ ଆଉ ଜଣେ ଭଦ୍ରଲୋକ ବସିଥିଲେ, ମୋ ସିଟ୍ ପାଖକୁ ଚାଲି ଆସିଲେ । ହସିଦେଇ କହିଲେ, 'ଜ୍ଞାନବାବୁ, ଯାହା ହେଉ ଆପଣଙ୍କ ସାଙ୍ଗେ ଦେଖା ହେଇଗଲା । ସମୟଟା ଆରାମରେ କଟିଯିବ ।' ମୁଁ ପୁଣି ଅଡୁଆରେ ପଡ଼ିଗଲି ।

ମନେ ମନେ ଭାରି ବିରକ୍ତ ହୋଇଯାଇଥିଲି । ଇଚ୍ଛା ହେଉଥିଲା- ଟ୍ରେନରେ ବୁଲି ବିକୁଥିବା କାକୁଡ଼ିବାଲାଠୁ ଛୁରୀଟା ଆଣି ଭଦ୍ରଲୋକଙ୍କ ହାତକୁ ବଢ଼େଇ ଦେଇ କହିବି- ଏ ଛୁରୀ ନିଅ । ସମୟଟା ଯଦି ତୁମକୁ ଏତେ ଅଡୁଆ କରୁଚି, ନିଜ ବେକଟାକୁ କାଟିଦିଅ । ଜୀବନର ସବୁଯାକ ସମୟ ଏଇଠି ସାଙ୍ଗେ ସାଙ୍ଗେ କଟିଯିବ । ନିଜ ସମୟକୁ କାଟିବ ବୋଲି ଅନ୍ୟର ସମୟ ନଷ୍ଟ କରୁଚ କାହିଁକି ?

ଅବସର ପରେ ଅନେକ ଲୋକଙ୍କ ସମୟ କଟେନି । ସେମାନେ ସଠିକ୍ ଢ଼ଙ୍ଗରେ ସମୟ କାଟିବା ପାଇଁ ସାହିତ୍ୟ, ସମାଜ ସେବାଠୁ ଧାର୍ମିକ ଅନୁଷ୍ଠାନ ଯାଏଁ ନାନା କାର୍ଯ୍ୟରେ ଲାଗିଯାଆନ୍ତି । ଅବସର ପରେ ସାହିତ୍ୟସେବା ଆରମ୍ଭ କରିଥିବା ଜଣେ ଭଦ୍ରଲୋକ ଆମ ଘର ପାଖରେ ରହନ୍ତି । ସବୁବେଳେ ସମୟ କାଟିବା ପାଇଁ ଲୋକ ଖୋଜୁଥାନ୍ତି । ସାଇପଡ଼ିଶାର ଲୋକେ କହନ୍ତି- ସେ ମୁଣ୍ଡ ଚାଟିବା

ପାଇଁ ଲୋକ ଖୋଜୁଚନ୍ତି । ତାଙ୍କ ହାବୁଡ଼ରେ ମୁଁ ବି’ ଚାରିଥର ପଡ଼ିଚି ।

ବୁଢ଼ା ବୟସର ଏଇ ତରୁଣ ସାହିତ୍ୟିକଙ୍କ ପାଟି ଖୋଲିଲେ ସାହିତ୍ୟ ବାହାରେ । ବହୁ ଡେରିରେ ସାହିତ୍ୟ ବେଉଷଣ ଆରମ୍ଭ କରିଥିବା ସାହିତ୍ୟିକଙ୍କର ଏଣ୍ଟୁ ତେଣ୍ଟୁ ଚର୍ଚ୍ଚା ଅନେକ ସମୟରେ ମୋ ମୁଣ୍ଡବଥାର କାରଣ ହୋଇଯାଏ । ଏଣୁ ସେ ଯେତେବେଳେ ଓଡ଼ିଆ କବିଙ୍କର କଥା ଆରମ୍ଭ କରନ୍ତି, ମୁଁ କହେ, ‘ଆପଣ ବୋଧେ ଜନ୍ କିଟ୍‌ସଙ୍କୁ ପଢ଼ିନାହାନ୍ତି । ଏଇ କଥାକୁ ନେଇ ଇଂରାଜୀ ସାହିତ୍ୟରେ ସେ ଚମତ୍କାର ଭାବରେ କହିଛନ୍ତି..... ।’ ଏଭଳି ଓଲଟ ସାହିତ୍ୟ ଚର୍ଚ୍ଚାରେ ଡରିଯାଇ ସେ ମୋ ପାଖକୁ ଆଉ ସମୟ କାଟିବା ପାଇଁ ଆସୁନାହାନ୍ତି ।

ଆଉ ଜଣେ ମଉସା ମଝିରେ ମଝିରେ ଦେଖା ହୁଅନ୍ତି । ସେ ଅବସର ପରେ ସମୟ କାଟିବା ପାଇଁ ମନ୍ଦିର ଯାଆନ୍ତି । ଦିନରୁ ଅଧେ ହରିନାମ କୀର୍ତ୍ତନ କରନ୍ତି । ମତେ ତାଙ୍କର ସମୟକଟା ଠିକ୍‌ଠାକ୍ ଲାଗେ । ସେଇ ଭଗବାନ ତୁମକୁ ସମୟ ଦେଇଚନ୍ତି । ତମେ ସେଇ ସମୟରେ ଯା ତା ମୁଣ୍ଡ ଚାଟିବା ଅପେକ୍ଷା, ତାଙ୍କରି ପାଖରେ ସମୟ କାଟିବା ସବୁଠୁ ଭଲ ।

ସମୟ କାଟିବାର ଢଙ୍ଗ ବିଭିନ୍ନ ଲୋକଙ୍କର ବିଭିନ୍ନ ପ୍ରକାରର । କିଏ ଟିଭି ଦେଖି ସମୟ କାଟୁଚି ତ କିଏ କମ୍ପ୍ୟୁଟର ଖେଳି ସମୟ କାଟୁଚି ତ କିଏ ମୋବାଇଲରେ ଗପି ସମୟ କାଟୁଚି ତ କିଏ ଇଣ୍ଟରନେଟ୍‌ରେ ଚ୍ୟାଟିଂ କରି । ସମୟ କାଟିବାର ଏତେ ଉପକରଣ ଥାଇ ମଧ୍ୟ ଲୋକଙ୍କ ସମୟ କଟୁନି ଯେ କିଏ ସମୟ କାଟିବା ପାଇଁ ନଖକୁ କାମୁଡ଼ି କାମୁଡ଼ି ଆଙ୍ଗୁଠି ଥୁଣ୍ଟା କରିଦେଉଚି ।

ଆମ ଘର ପାଖାପାଖି ରହୁଥିବା କିଛି ଘରୋଇ ସ୍ତ୍ରୀଲୋକଙ୍କ ସମୟ କାଟିବା ଢଙ୍ଗ ନିଆରା । ସ୍ୱାମୀ- ପିଲା ଅଫିସ ଆଉ ସ୍କୁଲ ଚାଲିଯିବା ପରେ ଏମାନେ ସମୟ କାଟିବା ପାଇଁ ଆମ ବାରଣ୍ଡାରେ ବସନ୍ତି । ଥରେ ଏମାନଙ୍କର ଆସର ଜମିଗଲେ ଆଉ ସହଜେ ଭାଙ୍ଗେ ନହିଁ । ସ୍ୱାମୀ-ପିଲା ଆସିଲା ପରେ ବି ସହଜରେ କେହି ଉଠିକି ଯାଆନ୍ତି ନାଇଁ । ସମସ୍ତଙ୍କର ଡର- ମୁଁ ଏଠୁ ଉଠିକି ଚାଲିଗଲେ, ମୋ ନାଆଁରେ ପୁଣି ଚର୍ଚ୍ଚା ଆରମ୍ଭ ହେଇଯିବ ନାଇଁ ତ !



# ଯୋଗାସନ

**ଆ**ଜିକାଲି ଚାରିଆଡ଼େ ଯୋଗ ଚାଲିଚି । ରାମଦେବ ବାବାଙ୍କ ଆବିର୍ଭାବ ପରେ ଯୋଗର ପ୍ରଚାର ପ୍ରସାର ଆହୁରି ବଢ଼ିଗଲା । ଘରେଘରେ, ରାସ୍ତାକଡ଼ରେ, ଛାତ ଉପରେ, ପଡ଼ିଆରେ, ଚାରିଆଡ଼େ ଏବେ ଯୋଗ । ଆମ୍ଭେ ସବୁ ଜାଗାର ଯୋଗ ଦେଖିଲାପରେ ଆମ୍ଭ ମନକୁ ସବୁଠୁ ବେଶି ଛୁଇଁଥିଲା ସର୍କାରୀ ଅଫିସ୍‌ମାନଙ୍କରେ ଚାଲିଥିବା ଯୋଗ ।

ମାସିକ ଦରମା ସାଙ୍ଗରେ ଆଉକିଛି ଉପୁରି ଭାବରେ ଯୋଗ ହେଇଯାଉଥିବା କାରଣରୁ ଏ' ଅଫିସ୍‌ମାନଙ୍କରେ ଯୋଗର ଆଦର ବେଶି । ଯାହା କର୍ମରେ କୁଶଳତା ଆଣିଦିଏ ତାକୁ ଯୋଗ କୁହାଯାଏ । ଉପୁରି ଭାବରେ ଆଉକିଛି ଯୋଗ ହେଇଯାଉଥିବା ଧନ ନିଶ୍ଚିତ ଭାବରେ କର୍ମରେ କୁଶଳତା ଆଣିଦବ ଏଥିରେ ସନ୍ଦେହ ନାହିଁ ।

ପୁନଶ୍ଚ, ଯମ, ନିୟମ, ପ୍ରାଣାୟାମ, ପ୍ରତ୍ୟାହାରଠାରୁ ଆରମ୍ଭ କରି ସମାଧି ପର୍ଯ୍ୟନ୍ତ ସମସ୍ତ ବିଷୟକୁ ନେଇ ଅଷ୍ଟାଙ୍ଗ ଯୋଗର କଥା ରହିଚି । ଯମ ଅର୍ଥ - କ'ଣ କରିବେ । ନିୟମ ଅର୍ଥ- କ'ଣ କରିବେ ନାହିଁ । ଏ' ଅଫିସ୍ ମାନଙ୍କରେ ଚାକିରି କରୁଥିବା ଯୋଗୀମାନେ ନିୟମକୁ ପାଳନ କରି ଅଫିସ୍‌ରେ ପୁରାସମୟ କାମ କରନ୍ତି ନାହିଁ । ଯମକୁ ପାଳନ କରି ଅଫିସ୍‌ରେ ଯାବତୀୟ ଗୁଲିଖଟି, ଅଫିସ୍ ଫୋନ୍‌ରୁ କଥାବାର୍ତ୍ତା ଇତ୍ୟାଦି କରିଥା'ନ୍ତି ।

ତେବେ ଏ ଅଫିସ୍‌ର ଯୋଗୀମାନେ କରୁଥିବା ଦୁଇଟି ପ୍ରମୁଖ ଆସନ ସମ୍ପର୍କରେ ଆସନ୍ତୁ ଚର୍ଚ୍ଚା କରିବା । ଆପଣମାନେ ମଧ୍ୟ ଏ'ଭଳି ଆସନ କଲେ ଉପକୃତ ହେବେ ।

**୧ - ଫାଇଲ୍ ଚାପାସନ**

ଟେବୁଲ୍ ଉପରେଥିବା ଫାଇଲ୍‌ର ଦୁଇ ପାର୍ଶ୍ୱରେ ଦୁଇ ହାତର କହୁଣିକୁ ରଖନ୍ତୁ । ଦୁଇ ପାପୁଲି ସାମନା-ସାମନି ରହିବ । ଧୀରେଧୀରେ ଦୁଇ ହାତର ଆଙ୍ଗୁଳିକୁ ଛନ୍ଦି ଦିଅନ୍ତୁ । ଆସ୍ତେଆସ୍ତେ ହାତ ତଳକୁ ଆଣି ଫାଇଲ୍‌କୁ ଚାପି ଧରନ୍ତୁ । ଏହା ଫାଇଲ୍ ଚାପାସନ ।

ଏହି ଆସନକୁ ବାରମ୍ବାର ଅଭ୍ୟାସ କଲେ ନିଜର ପ୍ରତିଷ୍ଠା ବଢ଼ିଥାଏ । ଧନାଗମନର ରାସ୍ତା ଫିଟିଯାଏ । ପିଅନ, ଚପରାସୀଠାରୁ ଉଚ୍ଚପଦସ୍ଥ ଅଫିସରଙ୍କ ଯାଏ ସମସ୍ତଙ୍କ ହାତ ଚିକ୍କଣ କରିବାର ଉପାୟ ମିଳିଥାଏ ।

୨ - ଟେବୁଲ୍ ତଳାସନ

ଟେବୁଲ୍‌ର ଗୋଟାଏ ଡ୍ର'କୁ ଖୋଲା ରଖନ୍ତୁ । ଟେବୁଲ୍ ତଳେ ଡାହାଣ ହାତ ପାପୁଲିକୁ ଉପରମୁହାଁ କରି ମୁଠା କରନ୍ତୁ । ଆସ୍ତେଆସ୍ତେ ହାତ ଖୋଲନ୍ତୁ । ଧୀରେଧୀରେ ହାତକୁ ଆଗକୁ ବଢ଼ାନ୍ତୁ । ହାତରେ କିଛି ନ ପଡ଼ିବା ପର୍ଯ୍ୟନ୍ତ ହାତକୁ ସେମିତି ଖୋଲା ରଖିଥା'ନ୍ତୁ । କିଛି ବାଜିଗଲା ପରେ ହାତକୁ ବନ୍ଦ କରନ୍ତୁ ଆଉ ଡ୍ର ପାଖକୁ ଆଣି ବାଜିଥିବା ଜିନିଷକୁ ଡ୍ର'ରେ ରଖିଦିଅନ୍ତୁ । ଏହା ଟେବୁଲ୍ ତଳାସନ ।

ଏ ଆସନ ସମୟରେ ସତର୍କତା ଅବଲମ୍ବନ କରିବା ନିହାତି ଜରୁରୀ । ଆଖିକୁ ଅର୍ଦ୍ଧନିମିଳିତ ଅବସ୍ଥାରେ ରଖିବେ । ଏହାକୁ ବିରାଡ଼ିବୈଷ୍ଣବ ଭାବ ମଧ୍ୟ କୁହାଯାଏ । ଏ' ଅବସ୍ଥାରେ ଥିଲେ ପାର୍ଶ୍ୱରେ ଥିବା ଲୋକେ ଜାଣି ପାରିବେ ନାହିଁ ଯେ ଆପଣ କ'ଣ କରୁଚନ୍ତି । ଏହି ଆସନ ଅଭ୍ୟାସ ଦ୍ୱାରା ପ୍ରଚୁର ଧନାଗମ ହୁଏ । ଯୋଗୀଙ୍କ ଘରେ ଅମାପ ସମ୍ପତ୍ତି ଠୁଳ ହୁଏ । ଉଚ୍ଚପଦସ୍ଥ ଅଫିସରଙ୍କ ଆଶିର୍ବାଦ ମିଳିଥାଏ ।

ଯୋଗାସନର ସବୁଠୁ ବଡ଼ ନିୟମ ହେଲା - ପରିବେଶକୁ ଶୁଦ୍ଧପୂତ ଏବଂ ନିର୍ମଳ ରଖିବା । ସେଇଥିପାଇଁ ଭଜନ କୀର୍ତ୍ତନର ଆବଶ୍ୟକତା ଅଛି । ଅଫିସ୍‌ରେ ଚାକିରି କରୁଥିବା ଯୋଗୀମାନେ ନିଜେ ଏହି ଭଜନ ଗାଆନ୍ତି ନାହିଁ । ତାଙ୍କ ପାଖକୁ ଆସୁଥିବା ଭକ୍ତମାନଙ୍କୁ ବାଧ୍ୟ କରନ୍ତି ଗାଇବା ପାଇଁ :-

ଧନ ଘେନ କିରାଣିରେ କାର୍ଯ୍ୟ ବିଳମ୍ବିତ
ବିକଳ ଅବସ୍ଥା ଘେନି ପାତିଅଛୁ ହାତ
ମୋ କଳା ବଣିକରେ... ।

ମାସକ ଦରମାଟକ ନ ଅଣ୍ଟଇ ତୋତେ
ପୁଣି ଲାଞ୍ଚ ମାଗୁଥାଉ ବାବୁଟୁ କେମନ୍ତେ
ମୋ କଳା ବଣିକରେ... ।



ଉତ୍କଳର ହାସ୍ୟବ୍ୟଙ୍ଗ ଜଗତରେ ଜ୍ଞାନ ହୋତା ଏକ ଯଶସ୍ୱୀ ପ୍ରତିଭା । ତାଙ୍କ ବ୍ୟଙ୍ଗ ସୃଷ୍ଟିର ବୈଶିଷ୍ଟ୍ୟ ହେଉଛି ଯେ ଅନ୍ୟାନ୍ୟ ବ୍ୟଙ୍ଗସ୍ରଷ୍ଟାଙ୍କ ଭଳି ଶାବ୍ଦିକ କିମ୍ୱା ଆଙ୍ଗିକ ବ୍ୟଙ୍ଗ ପରିବର୍ତ୍ତେ ଭାବାତ୍ମକ ଅଥବା ଆତ୍ମିକ ବ୍ୟଙ୍ଗକୁ ସେ ତାଙ୍କ ସୃଷ୍ଟିର ପଞ୍ଜର ଭାବେ ଗ୍ରହଣ କରିଥା'ନ୍ତି । ସର୍ବଭାରତୀୟ ମଞ୍ଚରେ ଉତ୍କଳୀୟ ବ୍ୟଙ୍ଗକୁ ପ୍ରତିଷ୍ଠିତ କରାଇବାରେ ଶ୍ରୀ ହୋତାଙ୍କର ଉଲ୍ଲେଖନୀୟ ଯୋଗଦାନ ରହିଛି । ଦିଲ୍ଲୀ, କଲିକତା, ବାଙ୍ଗାଲୋର, ଲକ୍ଷ୍ନୌ, ନାଗପୁର, ପୁନେ, ସିଲଂ, ଫରକ୍କା ଆଦି ବହୁ ମଞ୍ଚରେ ଯୋଗଦାନ କରି ପ୍ରବାସୀ ଓଡ଼ିଆଙ୍କ ସମେତ ହିନ୍ଦୀ ଭାଷାଭାଷୀ ଶ୍ରୋତାଙ୍କ ପ୍ରିୟଭାଜନ ହୋଇପାରିଛନ୍ତି ଜ୍ଞାନ ହୋତା ।

ଘରେ ଘରେ ପୁରପଲ୍ଲୀରେ ଜଣେ ସାହିତ୍ୟିକଙ୍କର ଏଭଳି ଆଦୃତି ସର୍ବଭାରତୀୟ ସ୍ତରରେ ବିରଳ । କବି, ଲେଖକ, ନାଟ୍ୟକାର, ସ୍ତମ୍ଭକାର ଶ୍ରୀ ଜ୍ଞାନ ହୋତାଙ୍କୁ ଓଡ଼ିଆ ବ୍ୟଙ୍ଗ ସାହିତ୍ୟର ନବନିର୍ମାତା କହିଲେ ଅତ୍ୟୁକ୍ତି ହେବ ନାହିଁ ।

**ପ୍ରକାଶକ**

ରବିବାର ଆସିଲେ ଯେଉଁ ସ୍ତମ୍ଭଟି ପାଇଁ ଓଡ଼ିଶାର ଅଜସ୍ର ପାଠକ 'ରବିବାର ସମାଜ'କୁ ବ୍ୟଗ୍ରତାର ସହ ଅପେକ୍ଷା କରିଥା'ନ୍ତି ସେହି 'ଅଜ୍ଞାନ ବିଚାର' ସଂକଳନ ଏବେ ଆପଣଙ୍କ ହାତରେ । ପାଠକ ପାଠିକାଙ୍କ ଆଗ୍ରହକୁ ଦୃଷ୍ଟିରେ ରଖି ସେହି ସ୍ତମ୍ଭର ସୁନିର୍ବାଚିତ ଲେଖା ଗୁଡ଼ିକର ଏହି ସଙ୍କଳନ 'ଜ୍ଞାନ ହୋତାଙ୍କ ଅଜ୍ଞାନ ବିଚାର' ଆପଣ ମାନଙ୍କୁ ଭଲ ଲାଗିବ ନିଶ୍ଚୟ ।



**ଜଗନ୍ନାଥ ରଥ**
ପ୍ରକାଶକ ଓ ପୁସ୍ତକ ବିକ୍ରେତା
ବିନୋଦ ବିହାରୀ, କଟକ-୨